# ସ୍ମୃତି ଓ ସ୍ୱାକ୍ଷର



ପଣ୍ଡିତ ଶ୍ରୀଧର ଶତପଥୀ ଫାଉଣ୍ଡେସନ୍
ଭଞ୍ଜନଗର (ଗଞ୍ଜାମ)

# ସ୍ମୃତି ଓ ସ୍ୱାକ୍ଷର



ପ୍ରକାଶକ
ପଣ୍ଡିତ ଶ୍ରୀଧର ଶତପଥୀ ଫାଉଣ୍ଡେସନ୍
ଭଞ୍ଜନଗର (ଗଞ୍ଜାମ)

# ସ୍ମୃତି ଓ ସ୍ୱାକ୍ଷର

ପ୍ରକାଶକ

ଶ୍ରୀ ମନ୍ମଥ କୁମାର ଶତପଥୀ

ଆବାହକ, ପଣ୍ଡିତ ଶ୍ରୀଧର ଶତପଥୀ ଫାଉଣ୍ଡେସନ୍

ଭଞ୍ଜମାର୍ଗ,ଭଞ୍ଜନଗର-୭୬୧୧୨୬, ଗଞ୍ଜାମ

ମୁଦ୍ରଣ:

ରିପ୍ରୋପିଣ୍ଟ୍, ଏନ୍-୫/୪୩, ନୂଆପଲ୍ଲୀ, ଭୁବନେଶ୍ୱର-୧୫

ଲିପି ସଂଯୋଜନା

ଏ.ଟି. ଟେକ୍‌ନୋକ୍ରାଟ୍

ନୟାପଲ୍ଲୀ,ପ୍ଲଟ ନମ୍ବର- ୧୦୬୮

ଫୋନ- ୪୦୫୮୪୮(୦୬୭୪)

ଭୁବନେଶ୍ୱର- ୧୨

ପ୍ରକାଶ କାଳ: ମେ,୧୯୯୯

ମୂଲ୍ୟ: ସାଦା- ଟ ୪୦/-

ବନ୍ଧାଇ- ଟ ୫୦/-

## ଆମ କଥା

ନନା (ଶ୍ରୀଧର ଶତପଥୀ) ଆଜି ନାହାଁନ୍ତି । ଏକ ବର୍ଷ ତଳେ (୫.୪.୯୮) ଆମକୁ ଛାଡି ଚାଲିଗଲେ ଆରପାରିକୁ । ଶେଷ ସମୟ ଯାଏଁ ଆତଯାତ ହେଉଥିଲା - ପଣ୍ଡିତ, ସାହିତ୍ୟିକ ଓ ଜ୍ୟୋତିଷ ବନ୍ଧୁମାନଙ୍କର । ସେମାନଙ୍କୁ ଦେଖିଲେ ଆଲୋଚନା ହେଉଥିଲା, ତର୍କ ହେଉଥିଲା ଘଣ୍ଟା ଘଣ୍ଟା ଧରି । ଆମକୁ ତାହା ଅନେକ ଉପାଦାନ ଯୋଗାଉଥିଲା ; କିନ୍ତୁ ଆମର ଲକ୍ଷ୍ୟ ଓ ପଥ ଥିଲା ଭିନ୍ନ । ତଥାପି ସେଭଳି ଆଲୋଚନାର ପ୍ରଭାବ ଆମ ଉପରେ ଥିଲା ଅସୀମ । କହିବାରେ ଧୃଷ୍ଟତା ହେଲେ ହେଁ ନିର୍ବିବାଦରେ ସମସ୍ତେ କହିବେ- ସେ ଥିଲେ ଭଞ୍ଜନଗରର ଏକ ଅନୁଷ୍ଠାନ । ତାଙ୍କର ବ୍ୟକ୍ତିତ୍ୱ, ସାହିତ୍ୟ ପ୍ରତିଭା, ସୃଜନଶୀଳତା ଓ ଜ୍ୟୋତିଷ ଚର୍ଚ୍ଚା ସମ୍ପର୍କରେ ଏକ ଆଲୋଚନାତ୍ମକ ଗ୍ରନ୍ଥ ପ୍ରଣୟନକରିବା ପାଇଁ ନନାଙ୍କର ବନ୍ଧୁମାନେ ପରାମର୍ଶ ଦେଲେ । ସେମାନଙ୍କ ପରାମର୍ଶ ଓ ମତାମତ ଆମ ପରିବାରକୁ ଉତ୍ସାହିତ କଲା । ଆମେ ଏକ ସଂକଳନ ପ୍ରକାଶ କରିବାକୁ ନିଷ୍ପତ୍ତି ନେଲୁ । ନନାଙ୍କର ପ୍ରିୟ ସାଥୀ ଓ ସାହିତ୍ୟିକ ବନ୍ଧୁମାନଙ୍କୁ ଅନୁରୋଧ କଲୁ ଲେଖା ଦେବା ପାଇଁ । ସେମାନେ ଆମକୁ ପୂର୍ଣ୍ଣ ପ୍ରାଣରେ ସହଯୋଗ କରି ଏପରି ଉଦ୍ୟମର ଭୂୟସୀ ପ୍ରଶଂସା କଲେ । ତେଣୁ ଏହି

ସଂକଳିତ ଆଲୋଚନାଗୁଡିକ ନନାଙ୍କର ସାହିତ୍ୟ ପ୍ରତିଭା, ଜୀବନ ଚର୍ଚ୍ଚା, ସୃଜନଶୀଳତାକୁ ନେଇ ପରିପୁଷ୍ଟିତ । ପାଠକ ଓ ଗବେଷକମାନଙ୍କ କାର୍ଯ୍ୟରେ ଏହା ସହାୟକ ହେବ ବୋଲି ଆଶା ।

ଏହି ଆଲୋଚନାତ୍ମକ ପ୍ରବନ୍ଧଗୁଡିକରୁ ଅନେକ ଅଜ୍ଞାତ ତଥ୍ୟ ନନାଙ୍କ ସମ୍ପର୍କରେ ଉପଲବ୍ଧ କରିଅଛୁ । ଏ ପରିପ୍ରେକ୍ଷୀରେ ଏହି ସମସ୍ତ ସୃଜନଶୀଳ ସାହିତ୍ୟିକ ବୃନ୍ଦଙ୍କ ସାହାଯ୍ୟ ଓ ସହଯୋଗ ପାଇଁ ମୁଁ ସେମାନଙ୍କ ନିକଟରେ ଚିର କୃତଜ୍ଞ ।

ଏହାର ପ୍ରକାଶନ କାଳରେ ଅନୁଜ ସନ୍ତୋଷ, ସୁରେନ୍ଦ୍ର ଓ ଉପେନ୍ଦ୍ରର ସହଯୋଗ ପାଇଁ ଧନ୍ୟବାଦ ଜଣାଉଛି ।

୧.୫.୧୯୯୯

ମନ୍ମଥ ଶତପଥୀ
ପ୍ରକାଶକ

# -ସୂଚୀପତ୍ର-

| | ବିଷୟ | ପୃଷ୍ଠା |
|---|---|---|
| ୧. | ପଣ୍ଡିତ ଶ୍ରୀଧର ଶତପଥୀ: ବ୍ୟକ୍ତି ଓ ବ୍ୟକ୍ତିତ୍ୱ | ୧-୩ |
| ୨. | ପଣ୍ଡିତ ଶ୍ରୀଧର ଶତପଥୀ ଓଡିଶାର ଏକ ଅମ୍ଳାନ ପ୍ରତିଭା | ୪-୭ |
| ୩. | ଭଞ୍ଜଶ୍ରୀ ପଣ୍ଡୀତ ଶ୍ରୀଧର ଶତପଥୀ: ଏକ ଅମ୍ଳାନ ପ୍ରାଜ୍ଞ ବ୍ୟକ୍ତିତ୍ୱ | ୮-୯ |
| ୪. | ଭଞ୍ଜଶ୍ରୀ ଶ୍ରୀଧର ସ୍ମରଣେ | ୧୦-୧୩ |
| ୫. | ଉପେନ୍ଦ୍ର ଭଞ୍ଜଙ୍କୁ ଚିହ୍ନି ଚିହ୍ନେଇବାରେ ସ୍ୱର୍ଗୀୟ ଶ୍ରୀଧର ଶତପଥୀ | ୧୪-୪୦ |
| ୬. | ମୁଁ ତାଙ୍କୁ ଯେପରି ଜାଣେ | ୪୧-୪୪ |
| ୭. | ଶ୍ରୀ ଶ୍ରୀଧର ଭାଇନା | ୪୫-୪୭ |
| ୮. | ଏକ ଅମଳିନ ବ୍ୟକ୍ତିତ୍ୱ: ପଣ୍ଡିତ ଶ୍ରୀଧର ଶତପଥୀ | ୪୮-୫୧ |
| ୯. | ଭଞ୍ଜଶ୍ରୀଙ୍କ ଜୀବନର କେତେକ ଅଜ୍ଞାତ ପ୍ରସଙ୍ଗ | ୫୨-୫୬ |
| ୧୦. | ଭଞ୍ଜ ସାହିତ୍ୟ ଆଲୋଚକ ପଣ୍ଡିତ ଶ୍ରୀଧର ଶତପଥୀ | ୫୭-୬୧ |
| ୧୧. | ଶ୍ରୀଧର କବିତ୍ୱପ୍ରଭା -ଚନ୍ଦ୍ରପ୍ରଭା | ୬୨-୭୦ |
| ୧୨. | ଗବେଷକ ଭଞ୍ଜଶ୍ରୀ ଶ୍ରୀଧର | ୭୧-୮୧ |
| ୧୩. | ବହୁଶ୍ରୀ ର ଅଧିକାରୀ | ୮୨-୮୪ |
| ୧୪. | ଭଞ୍ଜ ସମୀକ୍ଷକ ଶ୍ରୀଧର ବାବୁ | ୮୫-୮୯ |
| 15. | Pandit Sridhar Satapathy-A Colourful Personality of Ghumsar | 1-3 |

# ପଣ୍ଡିତ ଶ୍ରୀଧର ଶତପଥୀ : ବ୍ୟକ୍ତି ଓ ବ୍ୟକ୍ତିତ୍ୱ

ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ

ଊନବିଂଶ ଶତାବ୍ଦୀର ଶେଷ ଦଶକରେ ଉପେନ୍ଦ୍ରଭଞ୍ଜଙ୍କୁ ନେଇ ଯେଉଁ ଅଶୋଭନୀୟ ମସୀସମରର ସୂତ୍ରପାତ ଘଟିଥିଲା । ତା'ର ଅବସାନ ପରେ ପରେ ଉପେନ୍ଦ୍ର ଭଞ୍ଜ ଓଡିଆ ସାହିତ୍ୟରୁ ପ୍ରାୟ ନିର୍ବାସିତ ହୋଇଥିଲେ । ସାହିତ୍ୟ ସମାଲୋଚକ ମାନଙ୍କ ପାଇଁ ସେ ଥିଲେ ଏକ ଅପାଙ୍‌କ୍ତେୟ କବି । ଦୀର୍ଘ ଅର୍ଦ୍ଧଶତାବ୍ଦୀ ପରେ ପୁଣି ତାଙ୍କୁ ସାହିତ୍ୟ ରାଜ୍ୟକୁ ଫେରାଇ ଆଣିବା ପାଇଁ ପ୍ରୟାସ ଆରମ୍ଭ ହୋଇଥିଲା । 'ଲାବଣ୍ୟବତୀ'ର ସମ୍ପାଦକ ୰ ଆର୍ତ୍ତବଲ୍ଲଭ ମହାନ୍ତି, କଳିଙ୍ଗ ଭାରତୀର ପ୍ରତିଷ୍ଠାତା ୰ ବିଚ୍ଛନ୍ଦଚରଣ ପଟ୍ଟନାୟକ ପ୍ରମୁଖଙ୍କ ଆନ୍ତରିକ ଉଦ୍ୟମରେ ଉପେନ୍ଦ୍ର କାବ୍ୟସୃଷ୍ଟିର ବିଚାର ଆଲୋଚନା ପୁଣି ଆରମ୍ଭ ହେଲା । ଏହି ଆଲୋଚନାକୁ ପ୍ରସାରିତ କରି ଉପେନ୍ଦ୍ରଭଞ୍ଜଙ୍କୁ ନୂତନ ଭାବରେ ଓଡିଶାର ଅଗଣିତ ଜନତାଙ୍କ ନିକଟରେ ପରିଚିତ କରାଇବା ପାଇଁ ଯେଉଁ ସାହିତ୍ୟସାଧକ, ସମାଲୋଚକ ତଥା ଓଜସ୍ୱିନୀ ବକ୍ତାବୃନ୍ଦ ସହାୟତା କରିଥିଲେ ସେମାନଙ୍କ ମଧ୍ୟରୁ ଶ୍ରୀଯୁକ୍ତ ଶ୍ରୀଧର ଶତପଥୀ ଅନ୍ୟତମ ।

ଭଞ୍ଜବଂଶ ଶାସିତ ଘୁମୁସର ରାଜ୍ୟର ବାସୁଦେବପୁର ଠାରେ ଶ୍ରୀଯୁକ୍ତ ଶତପଥୀ ୧୯୧୪ ମସିହା ସେପ୍ଟେମ୍ବର ମାସ ୧୫ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ଥିଲେ ୰ଜନାର୍ଦ୍ଦନ ଶତପଥୀ ଏବଂ ମାତା ରାସମତି ଦେବୀ । ବାସୁଦେବପୁରର ଏହି ଶତପଥୀ ପରିବାର ପୁରୁଷାନୁକ୍ରମେ ବିଦ୍ୟାଚର୍ଚ୍ଚା ପାଇଁ ଥିଲା ସୁପରିଚିତ । ତନ୍ତ୍ରସାଧନା, ଗଣିତ ଓ ଫଳିତ ଜ୍ୟୋତିଷ ଚର୍ଚ୍ଚା କର୍ମକାଣ୍ଡ ପ୍ରୟୋଗ କ୍ଷେତ୍ରରେ ଏହି ବଂଶର ଦାୟାଦମାନେ ପ୍ରତିଷ୍ଠା ଅର୍ଜନ କରିଥିଲେ । ଶ୍ରୀଧରଙ୍କ ପିତାମହ ବିଶ୍ୱନାଥ ଶତପଥୀ ଥିଲେ ତାଙ୍କ ସମୟର ଜଣେ ସୁନାମଧନ୍ୟ ପଣ୍ଡିତ, ଜ୍ୟୋତିଷ, ଆୟୁର୍ବେଦ, ତନ୍ତ୍ର ଏବଂ କର୍ମକାଣ୍ଡରେ ତାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଥିଲା । ଶତପଥୀ ପରିବାରର ମୂଲ୍ୟବାନ ଗ୍ରନ୍ଥାଗାରଟି ଏହାଙ୍କ ଦ୍ୱାରା ସମୃଦ୍ଧ ଲାଭ କରିଥିଲା । ସେ ନିଜେ କିଛି ଗ୍ରନ୍ଥ ରଚନା କରିବା ସହିତ ପ୍ରାୟ ତିନିଶତ ମୂଲ୍ୟବାନ ଗ୍ରନ୍ଥ ତାଳପତ୍ରରେ ନକଲ କରିଥିଲେ । ଏହି ବିଦ୍ୟାପ୍ରବୀଣ ପିତାମହଙ୍କ ବାତ୍ସଲ୍ୟମମତା, ଆଶୀର୍ବାଦ ଏବଂ ସାହଚର୍ଯ୍ୟ ହିଁ ଶ୍ରୀଧରଙ୍କୁ ଆଜି ବହୁ ସମ୍ମାନର ଅଧିକାରୀ କରିପାରିଥିଲା । ପୌତ୍ରର ଶିକ୍ଷାପାଇଁ ନିଜଗ୍ରାମରେ ସେ ଏକ ସଂସ୍କୃତ ଟୋଲ୍ ଆରମ୍ଭ କରିଥିବା ଏଠାରେ ଉଲ୍ଲେଖଯୋଗ୍ୟ ।

ଶ୍ରୀଧରଙ୍କ ବାଲ୍ୟଶିକ୍ଷା ଏହି ଟୋଲ୍‌ରୁହିଁ ଆରମ୍ଭ ହୋଇଥିଲା । ପରବର୍ତ୍ତୀ ସମୟରେ ସେ ପାରଳାଖେମୁଣ୍ଡି ସ୍ଥିତ ସଂସ୍କୃତ ମହାବିଦ୍ୟାଳୟରୁ ଭାଷାପ୍ରବୀଣ ପରୀକ୍ଷାରେ କୃତୀତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲେ । କିନ୍ତୁ ପିତୃବିୟୋଗ ଜନିତ ପ୍ରତିବନ୍ଧକ ତାଙ୍କୁ ଅଧିକ ଶିକ୍ଷାଲାଭରୁ ବଞ୍ଚିତ କରିଥିଲା । କହିବା ବାହୁଲ୍ୟ, ଆନୁଷ୍ଠାନିକ ଶିକ୍ଷା ଅପେକ୍ଷା ଶ୍ରୀଯୁକ୍ତ ଶତପଥୀ ପାରିବାରିକ ଶିକ୍ଷାରେ ହିଁ ଅଧିକ ପ୍ରବୀଣ । କୈଶୋରରୁ ହିଁ ତାଙ୍କ ପ୍ରତିଭାର ପରିଚୟ ମିଳିଥିଲା । ନଅବର୍ଷ ବେଳକୁ ସେ ନିଜର ସୁଲଳିତ ଗାୟନ ଶୈଳୀ ଓ ଅସାଧାରଣ ସ୍ମରଣ ଶକ୍ତି ଯୋଗୁ ପ୍ରହ୍ଲାଦ ନାଟକର ସୂତ୍ରଧର ରୂପେ ସୁଖ୍ୟାତି ଲାଭ କରିଥିଲେ । ପିତୃବ୍ୟଙ୍କ ରଚିତ ସଙ୍ଗୀତଗୁଡିକୁ ସୁଲଳିତ କଣ୍ଠରେ ଗାନ କରିବା ତାଙ୍କର ଥିଲା ବିଶେଷତ୍ୱ । ବାସୁଦେବପୁର ଟୋଲ୍‌ରେ ଅଧ୍ୟୟନ କରୁଥିଲା ବେଳେ ସେ 'ପ୍ରତିଭା' ନାମକ ଏକ ହାତଲେଖା ପତ୍ରିକାର ସଂପାଦନା କରୁଥିଲେ । ସେତେବେଳକୁ ତାଙ୍କ ବୟସ ମାତ୍ର ୧୪ ବର୍ଷ । ୧୯୨୭ ସାଲରେ ଗାନ୍ଧୀଜୀ ଯେତେବେଳେ ଗୋବରା ଆସିଥିଲେ ସେତେବେଳେ ନବଯୁବକ ଶ୍ରୀଧର ଥିଲେ ଜଣେ ସକ୍ରିୟ ସ୍ୱେଚ୍ଛାସେବୀ । ଗୋବରାର ତତ୍କାଳିନ ବିଶିଷ୍ଟ କଂଗ୍ରେସ ନେତା ବାଞ୍ଛାନିଧି ପଟ୍ଟନାୟକଙ୍କ ପ୍ରେରଣା, ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶଙ୍କ ପରି ଜନନାୟକମାନଙ୍କ ସାହଚର୍ଯ୍ୟ ତାଙ୍କୁ ଜାତୀୟ କଂଗ୍ରେସର ଆଦର୍ଶରେ ଉଦ୍‌ବୁଦ୍ଧ କରିଥିଲେ । ସେହି ସମୟ ଠାରୁ ସେ ନିଜର କୌଳିକ ବୃତ୍ତି ଅନୁସରଣ କରି ଜନତାର ସେବା କରିଆସୁଥିଲେ ।

୧୯୪୪ ମସିହାରୁ ଭଞ୍ଜସାହିତ୍ୟ ପ୍ରତି ତାଙ୍କର ଆଗ୍ରହ ସୃଷ୍ଟି ହୁଏ । ୧୯୬୦ ମସିହାରେ ଯେତେବେଳେ ଭଞ୍ଜନଗରରେ ଭଞ୍ଜସାହିତ୍ୟ-ପରିଷଦର ପ୍ରତିଷ୍ଠା ହୁଏ, ସେତେବେଳେ ସେ ଏହାର ସଂପାଦକ ରୂପେ ନିଯୁକ୍ତ ହୁଅନ୍ତି । ସେହି ସମୟଠାରୁ ଆଜି ପର୍ଯ୍ୟନ୍ତ ଭଞ୍ଜସାହିତ୍ୟର ଆଲୋଚନା ଓ ଗବେଷଣା ତାଙ୍କ ଜୀବନର ଲକ୍ଷ୍ୟ ହୋଇଆସିଥିଲା । ଉପେନ୍ଦ୍ର ଭଞ୍ଜଙ୍କ ବହୁ ଉପାଦେୟ ରଚନା ସେ ସଂଗ୍ରହ କରିଛନ୍ତି । ଭଞ୍ଜଙ୍କ ଜୀବନୀ ଏବଂ କାବ୍ୟକୃତି ସମ୍ପର୍କରେ ବିଭିନ୍ନ ସୂତ୍ରରୁ ବହୁତଥ୍ୟ ତାଙ୍କ ଦ୍ୱାରା ସଂଗୃହୀତ । ସେ ଭଞ୍ଜକବିଙ୍କ 'ଗୀତାଭିଧାନ'ର ଏକ ଅଭିନବ ସଂସ୍କରଣ ପ୍ରକାଶ କରିଛନ୍ତି । 'ଭଞ୍ଜସାହିତ୍ୟରେ ପ୍ରକୃତି ଚିତ୍ର','ରାଜକବି ଧନଞ୍ଜୟ ଭଞ୍ଜ ଏବଂ ସଂକ୍ଷିପ୍ତ ଘୁମୁସର ଇତିହାସ', 'ଅମର ସନ୍ତାନ କବିସମ୍ରାଟ ଉପେନ୍ଦ୍ରଭଞ୍ଜ', 'ଭଞ୍ଜ ସନ୍ଦର୍ଭ' ଏବଂ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ବହୁ ପ୍ରବନ୍ଧ ତାଙ୍କ ଗବେଷଣାର ଫଳଶ୍ରୁତି । ଭଞ୍ଜସାହିତ୍ୟକୁ ତନ୍ନ ତନ୍ନ ଅଧ୍ୟୟନ କରିଥିବା ମୁଷ୍ଟିମେୟ ତଦ୍‌ବିଦଙ୍କ ମଧ୍ୟରୁ ପଣ୍ଡିତ ଶତପଥୀ ଅନ୍ୟତମ । ଏ ସାହିତ୍ୟର ସେ ଜଣେ ରସଗ୍ରାହୀ ବିଦଗ୍ଧ ପାଠକ ଏବଂ ଚିନ୍ତାଶୀଳ

ସମାଲୋଚକଥିଲେ । ଏଥିପାଇଁ ସେ 'ଓଡିଶା ସାହିତ୍ୟ ଏକାଡେମୀ', 'କଳିଙ୍ଗ ଭାରତୀ', 'ଓଡିଆ ସାହିତ୍ୟ ପରିଷଦ' ପ୍ରଭୃତି ଖ୍ୟାତନାମା ଅନୁଷ୍ଠାନ ତରଫରୁ ସମ୍ବର୍ଦ୍ଧିତ ଓ ସମ୍ମାନିତ ହୋଇଥିଲେ ।

କେବଳ ସାହିତ୍ୟ ନୁହେଁ, ଜ୍ୟୋତିଷ ଓ କର୍ମକାଣ୍ଡରେ ମଧ୍ୟ ପଣ୍ଡିତ ମହାଶୟଙ୍କ ବ୍ୟୁତ୍ପତ୍ତି କମ୍ ନଥିଲା । ସାମନ୍ତ ଚନ୍ଦ୍ରଶେଖରଙ୍କ ପ୍ରତ୍ୟକ୍ଷ ଶିଷ୍ୟ ଗଞ୍ଜାମର ଖ୍ୟାତନାମା ଅଦ୍ଭୁତ ପଣ୍ଡିତ ଗଦାଧର ବିଦ୍ୟାଭୂଷଣଙ୍କ ଠାରୁ ସେ ପ୍ରତ୍ୟକ୍ଷ ଭାବରେ ଜ୍ୟୋତିଷ ଶାସ୍ତ୍ର ଶିକ୍ଷା କରିଥିଲେ । ସଦାଶିବ ବିଦ୍ୟାଭୂଷଣ ଏବଂ ଗୋପବନ୍ଧୁ ବିଦ୍ୟାଭୂଷଣ ତାଙ୍କର ଶିକ୍ଷାଗୁରୁ । ସେ ଗୋପବନ୍ଧୁ ବିଦ୍ୟାଭୂଷଣଙ୍କ ଦ୍ୱାରା ଶାକ୍ତାଭିଷିକ୍ତ । ଜ୍ୟୋତିଷ ଶାସ୍ତ୍ରରେ ନିଜର ବ୍ୟୁତ୍ପତ୍ତି ପାଇଁ ସେ ବିଭିନ୍ନ ରାଜଦରବାରରୁ ଉପାଧି ଓ ଉପଢୌକନ ଲାଭ କରିଥିଲେ, 'ଜ୍ୟୋତିର୍ବିନୋଦ' ଟିକାଲି ରାଜ ପ୍ରଦତ୍ତ ଉପାଧି । ସେ ମନ୍ଦିର ଓ ମୂର୍ତ୍ତି ପ୍ରତିଷ୍ଠା କ୍ଷେତ୍ରରେ ଜଣେ ଅବିସମ୍ବାଦିତ ଆଚାର୍ଯ୍ୟ । ବହୁ ଯଜ୍ଞାନୁଷ୍ଠାନରେ ସେ ପ୍ରଚାରକ ରୂପେ କାର୍ଯ୍ୟ କରିଯାଇଛନ୍ତି ।

ଏହିପରି ଜଣେ ବାଗ୍ମୀ, ସାହିତ୍ୟିକ, ସମାଲୋଚକ, ଜ୍ୟୋତିଷ ଓ ବେଦ ବିଶେଷଜ୍ଞ, ଭଞ୍ଜ ସାହିତ୍ୟ ବିଶାରଦଙ୍କୁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତାହାର ଅଷ୍ଟାବିଂଶତିତମ ପ୍ରତିଷ୍ଠା ଦିବସରେ ସମ୍ମାନ ପ୍ରଦର୍ଶନ କରିଥିଲା ।

ଏହି ଅବସରରେ ପଣ୍ଡିତ ଶ୍ରୀଧର ଶତପଥୀଙ୍କ ଅମର ସ୍ମୃତି ପ୍ରତି ସମ୍ମାନ ପ୍ରଦର୍ଶନ କରୁଅଛି ।

ଅଶୋକନଗର, ବ୍ରହ୍ମପୁର

* * * * *

# ପଣ୍ଡିତ ଶ୍ରୀଧର ଶତପଥୀ ଓଡିଶାର ଏକ ଅମ୍ଳାନ ପ୍ରତିଭା

ଶ୍ରୀ ଲକ୍ଷ୍ମଣ କୁମାର ପରିଡା

ଭଞ୍ଜନଗର ମହାବିଦ୍ୟାଳୟରେ ଓଡିଆ ଅଧ୍ୟାପକ ଭାବେ ମୁଁ ଯୋଗ ଦିଏ ୧୯୬୦ ମସିହା ଅଗଷ୍ଟ ୧୦ ତାରିଖରେ । ଘରଭଡା ଖୋଜିବା ଅବସରରେ ମୋର ଧୋବା ସାହୀରେ ପ୍ରଥମେ ଦେଖାହୁଏ ପଣ୍ଡୀତ ଶ୍ରୀଧର ଶତପଥୀଙ୍କ ସଙ୍ଗରେ । ତାଙ୍କ ପରାମର୍ଶରେ ମୁଁ ତାଙ୍କ ଆଗ ସାମନାରେ ଗୋଡିପଲ୍ଲୀ ପଣ୍ଡାଙ୍କ ଘରେ ରହିଲି । ଆସ୍ତେ ଆସ୍ତେ ସେ ମୋତେ ଅତି ଆପଣାର କରିନେଲେ । ନଈକୁ ଗାଧୋଇ ଗଲାବେଳେ ଢାଳଟିଏ ଧରି ଯାଆନ୍ତି । ପିଣ୍ଡାରେ ମୋର ବଡ ପୁଅ ବିକୁ ଖେଳୁ ଥିବା ସମୟରେ ତାକୁ ଅଜା ହିସାବରେ ଟିକିଏ ଗେହ୍ଲା କରି ଯାଆନ୍ତି । ସେଇ ଟିକକ ଗେଲରେ ସତେ ଯେପରି ସେ ସ୍ନେହର ଅଜସ୍ର ପସରା ଢାଳି ଦେଇଯାଆନ୍ତି । କାଖେଇ କୋଳେଇ ତାକୁ ଆଦର କରନ୍ତି, ଆଉ ଘରକୁ ଡାକି ନେଇ କେତେ ଆଦର ଗୌରବ କରନ୍ତି । ବିକୁ ଆମକୁ କନ୍ଦେଇ ଚାଲିଗଲା । ୧୯୮୧ ମସିହାରେ ଆମେ ସ୍ୱାମୀ ସ୍ତ୍ରୀ ଏକଦମ ଭାଙ୍ଗି ପଡିଲୁ । ସେ କେତେ ଆଶ୍ୱାସନା ଦେଇ ପୁଅଝିଅ ଭଳି ଆମ ଦୁଃଖକୁ ଲାଘବ କରନ୍ତି, ତାହା ଆଦୌ ଭୁଲିବାର ନୁହେଁ । ଆସ୍ତେ ଆସ୍ତେ ପଣ୍ଡିତ ଶତପଥୀ ଆମକୁ ଅତି ଆପଣାର କରିନେଲେ । ମୋତେ ଟାଣିନେଲେ ଭଞ୍ଜସାହିତ୍ୟ ଆଲୋଚନାର ପରିସର ଭିତରକୁ । ମୋତେ ବି ଭଞ୍ଜସାହିତ୍ୟରେ ବକ୍ତୃତା ଦେବାକୁ ପ୍ରେରଣା ଦେଲେ ଓ ଭଞ୍ଜସାହିତ୍ୟ ଭିତରକୁ ପଶିବା ପାଇଁ ଉତ୍ସାହ ଦେଲେ । କାଳକ୍ରମେ ମୁଁ ତାଙ୍କ ପ୍ରେରଣାରେ ଭଞ୍ଜସାହିତ୍ୟକୁ ଅତି ନିଜର କରି ଦେଲି ଓ କିଛି ସମୟ ଭଞ୍ଜସାହିତ୍ୟ ପରିଷଦର ସଭ୍ୟ ହୋଇ ରହିଲି । ପଣ୍ଡିତ ମହାଶୟ ସବୁବେଳେ ମୋତେ ଭଞ୍ଜଙ୍କ ଉପରେ କିଛି ପ୍ରବନ୍ଧ ଲେଖିବାକୁ ପ୍ରୋତ୍ସାହନ ଦେଲେ । ଯାହା ଫଳରେ ମୁଁ ମହାବିଦ୍ୟାଳୟର ମୁଖପତ୍ର 'ଭଞ୍ଜ ଭାରତୀ'ରେ କ୍ରମାନ୍ୱୟରେ ପ୍ରବନ୍ଧ ଲେଖା ଆରମ୍ଭ କଲି । ତାହା ଦେଖି ସେ ମୋତେ ବିଶେଷ ତାରିଫ୍ କରି କହନ୍ତି,''ପରିଡା ବାବୁ ! ଲେଖି ଚାଲନ୍ତୁ, ଦିନେ ନା ଦିନେ ଏ ଲେଖା, ତାର ଉପଯୁକ୍ତ ମୂଲ୍ୟାୟନ କରିବ ''।

ପଣ୍ଡିତ ମହାଶୟ, ମୋତେ ''ପରିଡା ବାବୁ'' ବୋଲି ସର୍ବଦା ସମ୍ବୋଧନ କରନ୍ତି । ତାଙ୍କ ସାନ୍ନିଧ ଲାଭକରି ମୁଁ ଭଞ୍ଜ ସାହିତ୍ୟର ଅଗାଧ ସମୁଦ୍ରରେ ଆସ୍ତେ ଆସ୍ତେ

ପ୍ରବେଶ କରି ସୁବକ୍ତା ଭାବେ ପ୍ରତିଷ୍ଠା ଲାଭ କଲି । ପ୍ରତି ପଦକ୍ଷେପରେ ସେ ମୋତେ ପ୍ରେରଣା ଯୋଗାଇ ଭଞ୍ଜସାହିତ୍ୟ ପରିଷଦର ଜଣେ ସ୍ଥାୟୀ ବକ୍ତା କରିନେଲେ । କିଏ ଅନୁପସ୍ଥିତ ରହିଲେ ଆମ୍ଭେ ଦୁହେଁ କାମ ଚଳାଇ ନେଉ ।

ଭଞ୍ଜସାହିତ୍ୟ ପରିଷଦର ଭଞ୍ଜଜୟନ୍ତୀ ଉତ୍ସବ କହିଲେ ପଣ୍ଡିତ ମହାଶୟଙ୍କ ଉଦ୍ୟମ, ଉତ୍ସାହ, ପ୍ରଚେଷ୍ଟା ଓ କର୍ମପ୍ରେରଣାକୁ ହିଁ ବୁଝାଏ । ଭଞ୍ଜସାହିତ୍ୟ ପରିଷଦରେ ଜୟନ୍ତୀ ଉତ୍ସବରେ କେହି ନଥିଲେ ମଧ୍ୟ ତାଙ୍କର ସର୍ବାଗ୍ରେ ଦେଖା ମିଳେ । ବେଦଗାନଠାରୁ, ବକ୍ତୃତା ଦେବା, ସଭାପତିତ୍ୱ ଥିବା ଆଦି ସବୁଦିଗରେ ତାଙ୍କର ଅଫୁରନ୍ତ ଆଗ୍ରହ ଓ ଉତ୍ସାହ । ଭଞ୍ଜକୁ ଯଦି କେହି ଓଡିଶାରେ ପୁରପଲ୍ଲୀରେ ପରିଚିତ କରିଥାନ୍ତି, ସେ ହେଉଛନ୍ତି ପଣ୍ଡିତ ଶ୍ରୀଧର ଶତପଥୀ ।

ପଣ୍ଡିତ ଶ୍ରୀଧର ଶତପଥୀ ଓଡିଶାର ଜଣେ ଅମ୍ଳାନ ବ୍ୟକ୍ତିତ୍ୱ । ସେ ଏକାଧାରାରେ ଜଣେ ଭଞ୍ଜସାହିତ୍ୟ ପ୍ରେମୀ, କର୍ମକାଣ୍ଡୀ ପୁରୋହିତ, ଜ୍ୟୋତିଷବିଶାରଦ, ଉଚ୍ଚକୋଟୀର ଭଞ୍ଜ ସାହିତ୍ୟ ଗବେଷକ, ପୋଥି ସଂଗ୍ରାହକ, ସୁବକ୍ତା, ନିଷ୍ଠାପର ସାଧକ, ଲୋକବତ୍ସଳ, ସ୍ୱଦେଶପ୍ରେମୀ, ସଂଗଠକ, ଜାତୀୟବାଦୀ, ସ୍ୱାଧୀନଚେତା ବ୍ୟକ୍ତି । ତାଙ୍କର ସମାଲୋଚନାତ୍ମକ ଗ୍ରନ୍ଥମାନଙ୍କ ମଧରେ ''ମହାକବି ଧନଞ୍ଜୟ ଭଞ୍ଜ'',''ଅମର ସନ୍ତାନ କବି ସମ୍ରାଟ ଉପେନ୍ଦ୍ରଭଞ୍ଜ'', ''ଭଞ୍ଜସନ୍ଦର୍ଭ'', ''ଭଞ୍ଜ ସାହିତ୍ୟରେ ପ୍ରକୃତି ଚିତ୍ର'' ପ୍ରଭୃତି ପ୍ରଧାନ । ଭଞ୍ଜଙ୍କ ''ଗୀତାଭିଧାନ'',''ଶୋଭାବତୀ'', ''ଚନ୍ଦ୍ରଲେଖା'' କାବ୍ୟ ପ୍ରଭୃତି ସଂଗ୍ରହ ଓ ସଂକଳନ କରି ସେ ଅପୂର୍ବ ଗୌରବର ଅଧିକାରୀ ହୋଇଛନ୍ତି । ''ଚନ୍ଦ୍ରପ୍ରଭା'' କାବ୍ୟ ଲେଖି ସେ ନିତ୍ୟ କବି ପ୍ରତିଭାର ଯଥାର୍ଥ ପରିଚୟ ପ୍ରଦାନ କରିଛନ୍ତି । ''ଗ୍ରହଶାନ୍ତି ବିଧାନ ପଦ୍ଧତି'' ''କିଛି ସ୍ମୃତି କିଛି ଅନୁଭୂତି''(ଜୀବନୀ) ତାଙ୍କର ଦୁଇଟି ଅତୀବ ଉପାଦେୟ ଗ୍ରନ୍ଥ ।

ପଣ୍ଡିତ ମହାଶୟ ଭଞ୍ଜସାହିତ୍ୟର ଏକ ଦିବ୍ୟ ପ୍ରେରଣାରଉତ୍ସ । ତାଙ୍କ ଉଲ୍ଲାସ ଓ ସାନ୍ନିଧ୍ୟ ଲାଭକରି ମୁଁ ''ଭଞ୍ଜ ସାହିତ୍ୟ ସମୀକ୍ଷଣ'', ''ଭଞ୍ଜସାହିତ୍ୟର ନବଦିଗନ୍ତ'' ଲେଖିଲି ବୋଲି କହିଲେ ଅତିରଞ୍ଜିତ ହେବ ନାହିଁ । ମୁଁ ବହି ଲେଖି ତାଙ୍କୁ ସର୍ବପ୍ରଥମେ ଉପହାର ଦେଲାବେଳେ ସେ ମୋତେ କୁଣ୍ଢାଇ ପକାଇ କହନ୍ତି,'' ପରିଡା ବାବୁ ! ଆଜି ମୁଁ ଭାରି ଖୁସି, ଆଗେଇ ଚାଲନ୍ତୁ । ଆଉ କିଛି ଭଞ୍ଜଙ୍କର ଅନାବିଷ୍କୃତ ଦିଗରେ ଆଲୋକପାତ କରିଯାଆନ୍ତୁ । ଦେଶ ଏବେ ନଚିହ୍ନିଲେ ବି ଦିନେ ନା ଦିନେ ତାର ପ୍ରାପ୍ୟ ଆପଣଙ୍କୁ ଦେବ ''।

''ବହିତ୍ର'' ପତ୍ରିକା ଭଞ୍ଜଯୁବପରିଷଦ ଦ୍ୱାରା ପ୍ରକାଶିତ ହେବା ମୂଳରେ ତାଙ୍କର ପ୍ରେରଣା ରହିଥିବାର ଅନୁମିତ ହୁଏ । ''ବହିତ୍ର''ରେ ପ୍ରବନ୍ଧ ଗୁଡିକ ଦେଖି ସେ ଯେପରି ଖୁସୀ ହୁଅନ୍ତି ସେହିପରି ମଧ ପ୍ରଶଂସା କରିବାକୁ ପଛାନ୍ତି ନାହିଁ ।

ପଣ୍ଡିତ ଶ୍ରୀ ଶତପଥୀଙ୍କୁ ବ୍ରହ୍ମପୁର ଉତ୍କଳ ପରିଷଦ ''ଭଞ୍ଜଶ୍ରୀ'' ଉପାଧିରେ ମଣ୍ଡିତ କରି ତାଙ୍କ ପ୍ରତିଭା ଓ ବ୍ୟକ୍ତିତ୍ୱକୁ ବନ୍ଦିତ କରିବା ଯେପରି ଯଥାର୍ଥ ହୋଇଛି, ସେହିପରି ମଧ୍ୟ ତାଙ୍କୁ କୃତାର୍ଥ କରିଛି । ଓଡିଶା ସାହିତ୍ୟ ଏକାଡେମୀ, ବ୍ରହ୍ମପୁର ବିଶ୍ୱ ବିଦ୍ୟାଳୟ ତାଙ୍କୁ ପୁରସ୍କୃତ ଓ ମାନପତ୍ର ଦେଇ ସମ୍ମାନିତ କରି ପ୍ରତିଭାପୂଜାର ବ୍ୟତିକ୍ରମ କରିନାହାନ୍ତି । ନିୟତିର ଭଞ୍ଜ ଜୟନ୍ତୀ ଉତ୍ସବରେ ତାଙ୍କୁ ''କର୍ମକାଣ୍ଡ ବିଦ୍ୟାରତ୍ନ'' ଉପାଧିରେ ଭୂଷିତ କରି ଉଚ୍ଚ ସମ୍ମାନ ଦେଇ ଅପୂର୍ବ ସାଫଲ୍ୟରେ ମଣ୍ଡିତ କରିଛି ।

ପଣ୍ଡିତ ଶତପଥୀ ଥିଲେ ମଣିଷ ପରି ମଣିଷଟାଏ । ସବୁବେଳେ ହସହସ ମୁହଁ । ମନେହୁଏ ବିଷାଦ ତାଙ୍କଠାରୁ ସତେ ଯେପରି ବିଦାୟ ନେଇଛି । ସେ କେବଳ ସାହିତ୍ୟିକ ନଥିଲେ । ତାଙ୍କ ପରିବାରର ପୁତ୍ରସନ୍ତାନମାନେ ମଧ୍ୟ ଗୋଟିଏ ଗୋଟିଏ ସୁସାହିତ୍ୟିକ । ବଡପୁଅ ମନ୍ମଥ ଶତପଥୀ ଜଣେ ଉଚ୍ଚକୋଟୀର ନାଟ୍ୟକାର । ଡଃ. ସନ୍ତୋଷ କୁମାର ଶତପଥୀ ଜଣେ ଲୋକସାହିତ୍ୟ ଗବେଷକ, ସୁରେନ୍ଦ୍ର କୁମାର ଶତପଥୀ ମଧ ଜଣେ ପ୍ରାବନ୍ଧିକ ଓ ଗବେଷକ । ଆଉ ଶ୍ରୀ ଉପେନ୍ଦ୍ର କୁମାର ଶତପଥୀ ଜଣେ କବି ଓ ସଫଳ ଅଭିନେତା ।

ଏହିପରି ଏକ ସାଂସ୍କୃତିକ ବାତାବରଣ ସୃଷ୍ଟିକରି ପଣ୍ଡିତ ଶତପଥୀ ଏ ମର ସଂସାରରୁ ଚିରଦିନ ପାଇଁ ବିଦାୟ ନେଇ ଚାଲିଗଲେ । ପଛରେ ରହିଗଲା ତାଙ୍କର ଭଞ୍ଜ ସାହିତ୍ୟ ପରିଷଦ, ତାଙ୍କର ଅତି ଆପଣାର ଲୋକବୃନ୍ଦ । ପଣ୍ଡିତ ଶତପଥୀ କଣ ମରିପାରନ୍ତି, ସେତ ମରଣଜୟୀ । ତାଙ୍କ କୃତି ଓ କୃତିତ୍ୱ ତାଙ୍କ ପ୍ରତିଭାକୁ ଉପଯୁକ୍ତ ସମ୍ମାନ ଦେଇ ଚିରଦିନ ଏକ ଅଲିଭା ସଳିତା ଜାଳି ରହିବ । ଆଉ ଭଞ୍ଜ ସାହିତ୍ୟ ପରିଷଦର ପ୍ରତ୍ୟେକ ଧୂଳିକଣା ତାଙ୍କ କଣ୍ଠ ବିସୃତ ବେଦର ଓଁକାର ଧ୍ୱନିରେ ପବିତ୍ର ହୋଇ ତାଙ୍କୁ ଖୋଜୁଥିବ ଭଞ୍ଜଜୟନ୍ତୀ ଉତ୍ସବରେ । ପୁଣି କୋହବୋଳା କଣ୍ଠରେ, ଅଶ୍ରୁଭରା ନେତ୍ରରେ କହୁଥିବ ''ଭଞ୍ଜଶ୍ରୀ ପଣ୍ଡିତ ମହାଶୟ ! ଆଉକଣ ତୁମେ ଫେରିବନି ? ଭଞ୍ଜ ସାହିତ୍ୟ କ୍ଷେତ୍ରରେ ଆଉ କଣ କଣ୍ଠ ଫୁଟାଇବ ନାହିଁ । ଚିରଦିନ ସଙ୍ଗ କରି ଏହି ଆପଣାର ଘୁମୁସର ମାଟିକୁ ପରକରି ତୁମେ ଚାଲି ଗଲ ସେ ପୁରକୁ । ସେ ପୁର ଏ ପୁର ଭିତରେ ଗୋଟିଏ ବାଡ, ମଝିରେ ଗୋଟିଏ ମୃତ୍ୟୁର ହିଡ । ''

ତଥାପି ପଣ୍ଡିତ ମହାଶୟ.! ଏ ଓଡିଆ ଜାତି ତୁମକୁ ସାଇତି ରଖିବ ନିଜର ହୃଦୟସିଂହାସନରେ । ତୁମେତ ଅମର, ମରମଣିଷ ବା ତୁମକୁ କଣ ଦେବ । ଖାଲି ଏତିକି କାମନା କରୁଛି ତୁମର ଆତ୍ମା ସଦ୍‌ଗତି ଲାଭକରୁ । ଆଉ ତୁମର ପ୍ରଥମ ଶ୍ରାଦ୍ଧ ବାର୍ଷିକୀରେ ତୁମ୍ଭେ ଆମକୁ ଅମୃତ ଦୃଷ୍ଟିରେ ଚାହିଁଥାଅ । ଆଉ କହୁଥାଅ ''ଆଗେଇ ଚାଲ, ଲେଖି ଚାଲ ।''

ପୂର୍ବତନ ଅଧ୍ୟକ୍ଷ
କବିସମ୍ରାଟ ଉପେନ୍ଦ୍ରଭଞ୍ଜ ମହାବିଦ୍ୟାଳୟ
ଭଞ୍ଜନଗର

* * * * *

# ଭଞ୍ଜଶ୍ରୀ ପଣ୍ଡିତ ଶ୍ରୀଧର ଶତପଥୀ : ଏକ ଅମ୍ଳାନ ପ୍ରାଜ୍ଞବ୍ୟକ୍ତିତ୍ୱ

ଡଃ.ଦଣ୍ଡପାଣି ବେହେରା

ଭଞ୍ଜବଂଶ ସାହିତ୍ୟର ଆଜୀବନ ଗବେଷକ ସଂସ୍କୃତ ଓଡିଆ ଭାଷା ଓ ସଂସ୍କୃତିର ଜଣେ ଧୂରୀଣ ପ୍ରାଜ୍ଞ ପୁରୁଷ ତଥା ଓଡିଶାର ଜଣେ ସ୍ୱନାମଧନ୍ୟ ସମାଜ ସେବୀ ଓ ସ୍ୱାଧୀନତା ସଂଗ୍ରାମୀ ଭଞ୍ଜଶ୍ରୀ ପଣ୍ଡିତ ଶ୍ରୀଧର ଶତପଥୀ ୧୯୧୪ ସେପ୍ଟମ୍ବର ୧୫ ତାରିଖ ଦିନ ପିତା ଜନାର୍ଦ୍ଦନ ଓ ମାତା ରାସମଣିଙ୍କର ଔରସରରେ ଗଞ୍ଜାମ ଜିଲ୍ଲାର ବାସୁଦେବପୁର ଶାସନ ଗ୍ରାମରେ ଭୂମିଷ୍ଠ ହୋଇଥିଲେ । ତାଙ୍କର ପିତା ଓ ପିତାମହ ବିଶ୍ୱନାଥ ଶତପଥୀ ଉଭୟେ ଶାସ୍ତ୍ରବିତ୍ ଭାବେ ବିଶେଷଖ୍ୟାତି ଅର୍ଜନ କରିଥିଲେ । ନିଜ ଗ୍ରାମ ସଂସ୍କୃତଟୋଲରେ ଶ୍ରୀଧର ବାଲ୍ୟ ସଂସ୍କୃତ-ଶିକ୍ଷା ସମାପନ କରିଥିଲେ । ୧୯୩୨ ରେ ବାସୁଦେବପୁର ଶାସନ ନିବାସୀ ସତ୍ୟବାଦୀ ତ୍ରିପାଠୀଙ୍କର କନ୍ୟା ଶକୁନ୍ତଳା ଦେବୀଙ୍କ ସହିତ ତାଙ୍କର ବିବାହ ହୁଏ । ସେହି ବର୍ଷ ପାରଳାଖେମଣ୍ଡି ଠାରେ ଗୋପବନ୍ଧୁ ବିଦ୍ୟାରତ୍ନଙ୍କର ପରାମର୍ଶ କ୍ରମେ ଗ୍ରହଚକ୍ର, ଭାସ୍ୱତି, ସିଦ୍ଧାନ୍ତ-ଶିରୋମଣି ସଂସ୍କୃତ ଗ୍ରନ୍ଥ ଅଧ୍ୟୟନ କଲେ । ଖଗୋଳ, ଭୂଗୋଳ, ଗଣିତ ଆଦି ଶାସ୍ତ୍ରରେ ଗଦାଧର ବିଦ୍ୟାଭୂଷଣଙ୍କର ତତ୍ତ୍ୱାବଧାନରେ ଶିକ୍ଷାଲାଭ କଲେ । ସେହିଭଳି ସେଠାରେ ତନ୍ତ୍ର ଓ ମନ୍ତ୍ର ସିଦ୍ଧରେ ପ୍ରବିଣତା ଲାଭକଲେ । ପରେ ସେ ୧୯୩୨ର ଶେଷାର୍ଦ୍ଧରେ ସେ କାମାକ୍ଷା ଓ ବନାରସ ଯାତ୍ରାକଲେ । ୧୯୩୪ରେ ପାରଳାଖେମଣ୍ଡିରେ ସଂସ୍କୃତର ସର୍ବବିଧ ଶାସ୍ତ୍ରରେ ଶିକ୍ଷା ସମାପନ କରି ସ୍ୱଗ୍ରାମକୁ ଫେରି ଆସିଲେ । ଘରର ଆର୍ଥିକ ଦୁରାବସ୍ଥା ତାଙ୍କୁ ଗଭୀର ଯନ୍ତ୍ରଣା ଦେଲା । ସେହି ବର୍ଷ ହିଁ ତାଙ୍କର ପିତାଙ୍କର ଅକାଳ ବିୟୋଗ ଘଟିଲା । ୧୯୪୨ରେ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନ କ୍ରମେ ଭାରତ ଛାଡ ଆନ୍ଦୋଳନର ଜାତୀୟ ମହସ୍ରୋତରେ ସାମିଲ ହେଲେ । ୧୯୪୪ ସେପ୍ଟମ୍ବର ମାସରେ ରସଲକେଣ୍ଡା (ଭଞ୍ଜନଗର)କୁ ସପରିବାର ଆସି ସେଠାରେ ଧୋବା ସାହୀଠାରେ ଏକ ଭଡାଘରେ ଅବସ୍ଥାନ କଲେ । ଭଞ୍ଜନଗର ରହଣୀ ଅବସରରେ ସେ ଭଞ୍ଜ ସାହିତ୍ୟ ପରିଷଦର ପ୍ରତିଷ୍ଠା ଓ ସଂରକ୍ଷଣରେ ସଂପୃକ୍ତ ହୋଇ ଭଞ୍ଜସାହିତ୍ୟ ଗବେଷଣା ଓ ସମୀକ୍ଷଣ କାର୍ଯ୍ୟରେ ନିଜକୁ ସଂପୂର୍ଣ୍ଣ ଭାବେ ନିୟୋଜିତ କଲେ । ତାଙ୍କର ସାହିତ୍ୟ ସାଧନା ଓ କୃତି ନିମନ୍ତେ ସେ ୧୯୪୬ ଜୁନ୍ ୧୧ ତାରଖ ଦିନ ଟେକାଲି ରାଜ୍ୟ ର ଗଣମାନ୍ୟ ବ୍ୟକ୍ତିଙ୍କର ଉପସ୍ଥିତିରେ ରାଜଦରବାରରେ ରାଜାସାହେବଙ୍କ ଦ୍ୱାରା

''ଜ୍ୟୋତିର୍ବିନୋଦ'' ଉପାଧୀ ପ୍ରାପ୍ତ ହେଲେ । ତତ୍ ପରେ ପରେ ସେ ସ୍ୱକୀୟ ସାହିତ୍ୟକ କୃତି- ଯଥା (୧)ଶୋଭାବତୀ କାବ୍ୟ (୨) ଚନ୍ଦ୍ରରେଖା କାବ୍ୟ (୩) ରାଜକବି ଧନଞ୍ଜୟ ଭଞ୍ଜ ।(୪) ଅମର ସନ୍ତାନ କବିସମ୍ରାଟ ଉପେନ୍ଦ୍ରଭଞ୍ଜ (୫) ଭଞ୍ଜ ସନ୍ଦର୍ଭ (୬) ଭଞ୍ଜ ସାହିତ୍ୟର ପ୍ରକୃତି ଚିତ୍ର (୭) ଗୀତାଭିଧାନ (୮) ଚନ୍ଦ୍ରପ୍ରଭା କାବ୍ୟ (୯) ସ୍ୱରୋଦୟୋକ୍ତ ଗ୍ରହଶାନ୍ତି ପଦ୍ଧତି ଇତ୍ୟାଦି ଯୋଗୁଁ ବହୁ ଉପାଧୀ ଓ ସମ୍ମାନ ବହୁ ଅନୁଷ୍ଠାନଙ୍କ ଦ୍ୱାରା ସମ୍ମାନିତ ହୋଇଛନ୍ତି - ଜ୍ୟୋତିର୍ବିନୋଦ ଉପାଧି (୧୯୪୬), ଭଞ୍ଜସାହିତ୍ୟ ବିଶାରଦ (୧୯୬୨) ଆର୍ତ୍ତତ୍ରାଣ ପୁରସ୍କାର (୧୯୯୨) ଓଡିଆ ସାହିତ୍ୟ ଏକାଡେମୀ (୧୯୯୩), ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତରଫରୁ ସମ୍ମାନୀତ (୧୯୯୪) ଭଞ୍ଜଶ୍ରୀ ଉପାଧି (୧୯୯୩), କର୍ମକାଣ୍ଡ ବିଦ୍ୟାରତ୍ନ (୧୯୯୫) । ଏହା ବ୍ୟତୀତ ବିଭିନ୍ନ ଅନୁଷ୍ଠାନ- ନିୟତି ଗବେଷଣା କେନ୍ଦ୍ର, (କଟକ) ଯଦୁମଣି ସାହିତ୍ୟ ସଂସଦ ,(ନୂଆଗାଁ-ଦଶପଲ୍ଲା) ବିକ୍ଷିପ୍ତା ସାହିତ୍ୟ ସଂସଦ (ବୁଗୁଡା) ପ୍ରତୀକ ସାହିତ୍ୟ ସଂସଦ , (ଭଞ୍ଜନଗର ) ୧୯୯୫ ସାଧାରଣ ତନ୍ତ୍ର ଉତ୍ସବ, ଭଞ୍ଜନଗରରେ ନାଗରିକ ସମ୍ବର୍ଦ୍ଧନା ।୧୯୯୫ ଉପେନ୍ଦ୍ର ହାଇସ୍କୁଲ ଭଞ୍ଜନଗର ସୁବର୍ଣ୍ଣଜୟନ୍ତୀ ଉତ୍ସବରେ ସମ୍ମାନୀତ ହୋଇଥିଲେ ।

ଏହିଭଳି ଓଡିଆ ସାହିତ୍ୟର ସାରସ୍ୱତ ଭଣ୍ଡାରକୁ ଶ୍ରୀପଣ୍ଡିତ ବୁଦ୍ଧିମନ୍ତ କରି ୧୯୯୮ ଏପ୍ରେଲ ୫ ତାରିଖରେ ଇହଧାମ ତ୍ୟାଗ କଲେ । ତାଙ୍କର ମୃତ୍ୟୁରେ ଭଞ୍ଜସାହିତ୍ୟ ସାଧନା ଓ ଗବେଷଣା କ୍ଷେତ୍ରରେ ଚିରଦିନପାଇଁ ଅପୂରଣୀୟ ଶୂନ୍ୟତା ସୃଷ୍ଟି ହୋଇଅଛି କହିଲେ ସତ୍ୟର ଅପଳାପ ହେବ ନାହିଁ। ତାଙ୍କର ଅମର ଗ୍ରନ୍ଥ ''ଅମର ସନ୍ତାନ କବିସମ୍ରାଟ ଉପେନ୍ଦ୍ରଭଞ୍ଜ''ଙ୍କ ଭଳି ସେ ସାରସ୍ୱତ କ୍ଷେତ୍ରରେ ଚିର ଅମର ଓ ଅବିସ୍ମରଣୀୟ ହୋଇ ରହିବ ।

ଏଣୁ ଏହି ଅବସରରେ ଭଞ୍ଜଶ୍ରୀ ଶ୍ରୀଧର ଶତପଥୀଙ୍କର ଅମର ସ୍ମୃତି ପ୍ରତି ସମ୍ୟକ ସମ୍ମାନ ପ୍ରଦର୍ଶନ କରିବା ସହ ଓଡିଆ ସାରସ୍ୱତ ଭଣ୍ଡାରକୁ ତାଙ୍କର କୃତୀ ସନ୍ତାନ ମାନେ ଶାଶ୍ୱତ ସୃଷ୍ଟି ଓ ରଙ୍ଗରେ ରୁପମୟ କରିବାରେ ସତତ ପ୍ରୟାସୀ ଓ ବ୍ରତୀ ରହିବେ ବୋଲି ଆଶା କରେ ।

*****

# ଭଞ୍ଜଶ୍ରୀ ଶ୍ରୀଧର ସ୍ମରଣେ

ଡକ୍ଟର କାଳୀଚରଣ ରଥ ।

ସ୍ୱନାମ ଧନ୍ୟ ଶ୍ରୀଧର ଶତପଥି ଥିଲେ ଜଣେ ଅନନ୍ୟସାଧକ । ବିଦ୍ୟାଳୟ ତଥା ମହାବିଦ୍ୟାଳୟରୁ ସ୍ନାତକାଦି ଉପାଧି ଅର୍ଜନ କରିନଥିଲେ ମଧ୍ୟ ସ୍ୱାଧ୍ୟାୟସିଦ୍ଧପୁରୁଷ ରୂପେ ସେଥିଲେ ଯଥାର୍ଥରେ ପଣ୍ଡିତ ଏବଂ ଜ୍ୟୋତିର୍ବିନୋଦ । ବୁଧ-ହଂସ-କେଳି-ସରୋବର ରୂପେ ଆଦୃତ ଘୁମୁସର ରାଜ୍ୟାନ୍ତର୍ଗତ ବାସୁଦେବପୁର ଶାସନ ଶୋଭିତ କୁଳୀନ ନୈଷ୍ଠିକ ବ୍ରାହ୍ମଣ ପରିବାରକୁ ନିଜ ଶୁଭ ଜନ୍ମରେ ବିଭୂଷିତ କରିଥିଲେ ଶ୍ରୀଧର ଶତପଥୀ ୧୯୧୪ ମସିହାରେ । କିନ୍ତୁ ତାଙ୍କରି ସ୍ୱାଧ୍ୟାୟ ନିଷ୍ଣାତ ସୁସଂସ୍କୃତ କର୍ମମୟ ଜୀବନର ମହାର୍ଘ ସମୟରାଜି ଭଞ୍ଜନଗରରେ ହିଁ ଅତିବାହିତ ହୋଇଥିଲା । ଅମାୟିକ, ବନ୍ଧୁବତ୍ସଳ, ସୁହୃଦୟ ତଥା ଜନପ୍ରିୟ ଏହି ସାଧକଙ୍କ ଜୀବନଥିଲା କର୍ମବହୁଳ ଏବଂ ସାଧନାରତ । ନିଜ ଜୀବନଚର୍ଯ୍ୟାର ଗତିଶୀଳ ପ୍ରବାହରେ ସେ ଦୁଇଟି ବିଷୟ ଅନୁଶୀଳନ କରିଯାଇଛନ୍ତି । ପ୍ରଥମଟି ବେଦାଙ୍ଗରୂପେ ବିବେଚିତ ଜ୍ୟୋତିବିଜ୍ଞାନ ଆଧାରିତ କର୍ମକାଣ୍ଡର ଅନୁଷ୍ଠାନ ଏବଂ ଦ୍ୱିତୀୟଟି ଓଡିଆ ଭାଷା-ସାହିତ୍ୟ-ସାମ୍ରାଜ୍ୟର ଯୁଗାନ୍ତକାରୀ ସ୍ରଷ୍ଟା କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ତଦ୍ୱିବିଦାହ୍ଲାଦକାରିଣୀ କାବ୍ୟକଳାର ବିଶ୍ଳେଷଣ । ତାଙ୍କରି ନୀତିମୟ ଜୀବିକା ନିର୍ବାହର ପ୍ରଥମଟି ଥିଲା ଉପାୟ ଓ ଅନ୍ୟଟି ଥିଲା ସାରସତ୍ୱ ଉପାସନାର କ୍ଷେତ୍ର ।

ବାସ୍ତବରେ ସାଂସାରିକ କର୍ମଜଞ୍ଜାଳ ମଧ୍ୟରେ ଲିପ୍ତହୋଇ ପରିବାରର ଶିକ୍ଷା, ସ୍ୱାସ୍ଥ୍ୟ ଓ ସାମାଜିକତା ରକ୍ଷା ଦିଗରେ ଯଥାଶକ୍ତି ମନୋନିବେଶ କରିଥିଲେ ସୁଦ୍ଧା ଉପେନ୍ଦ୍ର କାବ୍ୟକଳାର ସେଥିଲେ ଜଣେ ଅନନ୍ୟଉପାସକ । ଭଞ୍ଜ-ସାହିତ୍ୟ-ସାଗରରେ ଅବଗାହନକରି ସେ ଯେଉଁ ସମୁଜ୍ଜ୍ୱଳ ରତ୍ନନିଚୟ ଉଦ୍ଧାର କରିଯାଇଛନ୍ତି ସେ ସବୁର ଜ୍ୟୋତି ମଳିନ ହେବାର ନୁହେଁ । ଭଞ୍ଜନଗର ରଞ୍ଜିତ ସାରସ୍ୱତ ପ୍ରତିଷ୍ଠାନ ଭଞ୍ଜ ସାହିତ୍ୟ ପରିଷଦର ଜଣେ ନିଷ୍ଠାପର କର୍ମକର୍ତ୍ତା ଭାବେ ବିଭିନ୍ନ ପଦପଦବୀକୁ ଅଳଂକରଣ କରି ଭଞ୍ଜ ସାହିତ୍ୟର ବ୍ୟାପକ ପ୍ରଚାର ପ୍ରସାର ଦିଗରେ ସେ ଯେଉଁ ବଳିଷ୍ଠ ଅବଦାନ ଦେଇଯାଇଛନ୍ତି ତାହା ଅତୁଳନୀୟ ଓ ଅବିସ୍ମରଣୀୟ । ଭଞ୍ଜସାହିତ୍ୟ ପରିଷଦର ନୂତନ ଗୃହ ନିର୍ମାଣ ତଥା ଉପେନ୍ଦ୍ରଭଞ୍ଜଙ୍କ ପ୍ରତିମୂର୍ତ୍ତି ସଂସ୍ଥାପନ କ୍ଷେତ୍ରରେ ଶତପଥୀ ମହାଶୟଙ୍କ ନିରଳସ ଉଦ୍ୟମ ଭୁଲିବାର ନୁହେଁ । ସେ ବହୁଶ୍ରମ ସ୍ୱୀକାର କରି ଓଡିଶାର କଟକ, ଭୁବନେଶ୍ୱର, ରାଉରକେଲା, ସୁନାବେଡା ଆଦି ସ୍ଥାନରେ ଆୟୋଜିତ ଭଞ୍ଜଜୟନ୍ତୀ ସମାରୋହରେ

ଯୋଗଦାନ ପୂର୍ବକ ଭାଷଣ ପ୍ରସଙ୍ଗରେ ଭଞ୍ଜସାହିତ୍ୟର ପ୍ରାସଙ୍ଗିକ ଉପାଦେୟତା ପ୍ରତିପାଦନ କରିଯାଇଛନ୍ତି । ସୁଲଳିତ ଭାଷା ମାଧ୍ୟମରେ ଗଭୀର ଅଧ୍ୟୟପ୍ରସୂତ ଭଞ୍ଜୀୟ କାବ୍ୟ-ସୁଧାର ସୌନ୍ଦର୍ଯ୍ୟ ଏବଂ ମାଧୁର୍ଯ୍ୟ ଅନନ୍ୟ ସାଧାରଣ ରୀତିରେ ପ୍ରକାଶ କରି କବିଙ୍କ ମହତ୍ତ୍ୱ ପ୍ରତିଷ୍ଠା ଦିଗରେ ତାଙ୍କରି ପ୍ରଯତ୍ନଥିଲା ଉଲ୍ଲେଖ ଯୋଗ୍ୟ ।

'କୀର୍ତ୍ତିରକ୍ଷର ସମ୍ବନ୍ଧା ସ୍ଥିରା ଭବତି ଭୂତଳେ ' । ଏହି ସୂକ୍ତିକୁ ନୀତି ରୂପେ ଅବଲମ୍ବନକରି ସେ ଭଞ୍ଜସାହିତ୍ୟର ଚମକ ଚାତୁର୍ଯ୍ୟ ଉଦ୍‌ଘାଟନ ଅଭିପ୍ରାୟରେ ତିନିଗୋଟି ଅକ୍ଷୟ କୀର୍ତ୍ତିସ୍ୱରୂପ ''ଅମର ସନ୍ତାନ କବିସମ୍ରାଟ ଉପେନ୍ଦ୍ରଭଞ୍ଜ ' (୧୯୬୯), 'ଭଞ୍ଜସନ୍ଦର୍ଭ (୧୯୭୫), ଏବଂ 'ଭଞ୍ଜ ସାହିତ୍ୟରେ ପ୍ରକୃତି ଚିତ୍ର (୧୯୮୧)' ରଚନା କରି ଭଞ୍ଜନଗରରୁ ପ୍ରକାଶ କରିଛନ୍ତି । ଏତଦ୍‌ବ୍ୟତୀତ 'ରାଜକବି ଧନଞ୍ଜୟ ଭଞ୍ଜ ଏବଂ ସଂକ୍ଷିପ୍ତ ଘୁମୁସର ଇତିହାସ (୧୯୬୬)'ପୁସ୍ତିକା ତାଙ୍କ ସାଧନାର ଅନ୍ୟତମ ଫଳଶ୍ରୁତି । ଏ ସମସ୍ତ ପ୍ରବନ୍ଧ ପ୍ରକାଶନ ପୂର୍ବରୁ କବି ଉପେନ୍ଦ୍ର ବିରଚିତ ଅପ୍ରକାଶିତ 'ଶୋଭାବତୀ' ଓ 'ଚନ୍ଦ୍ରରେଖା' କାବ୍ୟଦ୍ୱୟର ସଂଗ୍ରାହକ ଓ ଟୀକାକାରର ଭୂମିକା ଗ୍ରହଣ କରି ଭଞ୍ଜସାହିତ୍ୟ ପରିଷଦ ଆନୁକୂଲ୍ୟରେ ପ୍ରକାଶିତ ହୋଇଛି । ଏବଂ ବିବିଧ ଉଦ୍ୟମରେ ଗବେଷଣାରେ ଶ୍ରଦ୍ଧା ତଥା ବିଦ୍‌ବତାର ପ୍ରକର୍ଷ ପ୍ରକଟିତ । ପୁଣି ଉପେନ୍ଦ୍ର ଭଞ୍ଜଙ୍କ ଅସଂକଳିତ କୋଷଗ୍ରନ୍ଥ 'ଗୀତାଭିଧାନ'ର ସଂକଳନ ଓ ପ୍ରକାଶନ ଦିଗରେ ତାଙ୍କରି ପ୍ରଚେଷ୍ଟା ଅଭିନନ୍ଦନୀୟ । ଏ ସମସ୍ତ ଗ୍ରନ୍ଥରେ ଉପେନ୍ଦ୍ରଙ୍କ ପାଣ୍ଡିତ୍ୟ ଓ କବିତ୍ୱର ଯେଉଁସବୁ ଦିଗ ଉନ୍ମୋଚିତ ତାହା ଆଲୋଚକ ଶତପଥୀଙ୍କ ଯଥାର୍ଥ ମନନର ପରିଚୟ ଦେବା ସଙ୍ଗେ ସଙ୍ଗେ କବିସମ୍ରାଟଙ୍କୁ ଜନାଦୃତ କରିବା କ୍ଷେତ୍ରରେ ଯଥେଷ୍ଟ ସହାୟକ ହୋଇଅଛି । କବି ଉପେନ୍ଦ୍ରଙ୍କ କାବ୍ୟକଦମ୍ବରେ ପ୍ରତିଫଳିତ ସୌନ୍ଦର୍ଯ୍ୟ ଦର୍ଶନର ବିଭିନ୍ନ ଦିଗ ଉଦ୍‌ଘଟନରେ ତାଙ୍କରି ସାର ସଂଗ୍ରହ ମନୋବୃତ୍ତିର ମୁଦ୍ରାଙ୍କନ ନିମ୍ନୋକ୍ତ ବିଷୟ ବିଭାଗ ଜନିତ ସମୀକ୍ଷଣ ରୀତିରେ ପ୍ରତିଫଳିତ । ଯଥା-

ପ୍ରକୃତି ଚିତ୍ର : -ପ୍ରକୃତିର କମନୀୟ ତଥା ମନୋଜ୍ଞ ପରିବେଶରେ ପ୍ରତିପାଳିତ ଓ ପରିବର୍ଦ୍ଧିତ କବି ଉପେନ୍ଦ୍ରଙ୍କ ହୃଦୟ ବିଦାରକ ପ୍ରକୃତି ଚିତ୍ରଣର ବୈଭବ, ବହୁବିଧ ଦୃଷ୍ଟାନ୍ତ ମାଧ୍ୟମରେ ଆଲୋଚକ ପ୍ରଦର୍ଶନ କରିଛନ୍ତି । ବହିଃ ପ୍ରକୃତିର ମନୋରମ ରୂପଚିତ୍ର ଅଙ୍କନ, ଉଦ୍ଦୀପନ ବିଭାବ ରୂପେ ତାହାରି ଭୂମିକା, ଔପମିକ ସୌନ୍ଦର୍ଯ୍ୟ ସଂସ୍ଥାପନରେ ତା'ର ବୈଶିଷ୍ଟ୍ୟ, ପ୍ରକୃତିର ମାନବୀୟ ଆଚରଣ ଆଦି ପ୍ରଦର୍ଶନରେ କବି ପ୍ରତିଭାର ଯଥାର୍ଥ ବିନିଯୋଗ, ଏହି ପ୍ରବନ୍ଧ ରଚନାରେ ସୂକ୍ଷ୍ମାତିସୂକ୍ଷ୍ମରୀତିରେ ବିବେଚିତ ।

ରସଚର୍ଯ୍ୟା- 'ବାକ୍ୟଂରସାତ୍ମକଂ କାବ୍ୟମ୍' । ରସିକ କବି ଉପେନ୍ଦ୍ରଙ୍କ ସୃଷ୍ଟିଚକ୍ରରେ ଏହି

ରସତତ୍ତ୍ୱର ସାର୍ଥକତା ପ୍ରତିପାଦନ ନିମିତ୍ତ ସମୀକ୍ଷକ ଶତପଥୀ ଶାସ୍ତ୍ରାନୁମୋଦିତ ଅଭିବ୍ୟକ୍ତ ରସ ସମୁଦାୟର ସ୍ୱରୂପ ନିର୍ଣ୍ଣୟ ସହିତ ସେ ସବୁର ଆବେଦନ ଯଥାର୍ଥ ଭାବେ ସଦୃଷ୍ଟାନ୍ତ ଆଲୋଚନା ମାଧ୍ୟମରେ ଉପସ୍ଥାପନ କରିଛନ୍ତି ।

ଆଳଙ୍କାରିକ ଉପେନ୍ଦ୍ର :-''ସୌନ୍ଦର୍ଯ୍ୟମଳଙ୍କାରଃ'' ଏବଂ ''ନକାନ୍ତମପି ନିର୍ଭୂଷଂ ବିଭାତି ବନିତାନନମ୍'' ଏହି କାବ୍ୟତତ୍ତ୍ୱକୁ ଭିତ୍ତିକରି ଉପେନ୍ଦ୍ର କବି ବ୍ୟାପାରରେ ଏହି ଅଳଙ୍କାର ରାଜିର ବିଳାସ ମାଧୁର୍ଯ୍ୟ ସମୀକ୍ଷକ ପଣ୍ଡିତ ଶତପଥୀ ଉପସ୍ଥାପନ କରିଛନ୍ତି । ଅଳଙ୍କାର ସଜ୍ଞା ଓ ସ୍ୱରୂପ ନିର୍ଦ୍ଧାରଣ ପୂର୍ବକ, ତାହାର ପ୍ରକାର ଭେଦ ଏବଂ ସଂଯୋଜନ କୌଶଳ ମାଧ୍ୟମରେ ଉପେନ୍ଦ୍ର-କାବ୍ୟ-ବନିତା କିପରି ବିଭୂଷିତା ଓ ଆକର୍ଷଣୀୟା ହୋଇଅଛି, ତାହା ବିଭିନ୍ନ ଉଦାହରଣ ଆଧାରରେ ପ୍ରତିପାଦିତ ।

ସାଂଗୀତିକ ଆବେଦନ :- ଶାସ୍ତ୍ରନୁମୋଦିତ ସଂଗୀତ ରଚନାରେ କବି ଉପେନ୍ଦ୍ରଙ୍କ ମୌଳିକତା ଏବଂ ପଦଲାଳିତ୍ୟ ତଥା ସ୍ୱରମାଧୁର୍ଯ୍ୟ ରସପେଶଳତା ଲାଭକରି ଶ୍ରୋତା ବା ପାଠକ ହୃଦୟରେ କିପରି ଅପୂର୍ବ ଭାବ-ଝଙ୍କାର ଉତ୍ତୋଳନ କରିପାରେ ତାହା ବହୁଶ୍ରମ ସ୍ୱୀକାର ପୂର୍ବକ ବିବକ୍ଷିତ ପ୍ରବନ୍ଧରେ ଉପସ୍ଥାପିତ ।

ରାମଭକ୍ତ ଉପେନ୍ଦ୍ର:- ଶ୍ରୀରାମ ତାରକ ମନ୍ତ୍ର ସାଧକ ଉପେନ୍ଦ୍ରଙ୍କ ସୃଷ୍ଟି ସନ୍ଦୋହରେ ରାମଭକ୍ତିର ଯେଉଁ ପରାକାଷ୍ଠା ତଥା ରାମାନୁଗତିର ସାର୍ଥକ ଅଭିବ୍ୟକ୍ତି ପ୍ରଦର୍ଶିତ ତାହା ସଦୃଷ୍ଟାନ୍ତ ମନୋଜ୍ଞରୀତିରେ ଅନୁଶୀଳିତ ।

**କବି ଉପେନ୍ଦ୍ରଙ୍କ ଅପ୍ରକାଶିତ ଗ୍ରନ୍ଥ:**-ଏ ସମ୍ବନ୍ଧରେ ପଣ୍ଡିତ ଶତପଥୀଙ୍କ ମତ ପ୍ରଣିଧାନଯୋଗ୍ୟ । ସେ ଲେଖନୀ ଲିଖିତ ବହୁ ତାଳପତ୍ର ପୋଥି ସଂଗ୍ରହ କରି ଭଞ୍ଜୀୟ ଶୈଳୀ ଉଦ୍ଭାସିତ କାବ୍ୟଗୁଡିକର ପ୍ରକାଶନ ଦିଗରେ ଦିଗ୍‌ଦର୍ଶନ ଦେଇଯାଇଛନ୍ତି । ଏହି ପ୍ରଚେଷ୍ଟାର ସାର୍ଥକ ରୂପାୟନ 'ଶୋଭାବତୀ' ଓ 'ଚନ୍ଦ୍ରରେଖା' କାବ୍ୟର ପ୍ରକାଶନ ନୁହେଁ କି ?

**ଭଞ୍ଜସାହିତ୍ୟରେ ପ୍ରତିଫଳିତ ଦର୍ଶନ :**-ଭାରତୀୟ ଷଡବିଧ ଦର୍ଶନର କାବ୍ୟିକ ପ୍ରୟୋଗ ଭଞ୍ଜଭାରତୀରେ କିପରି ସୁରକ୍ଷିତ ତା'ର ଏକ ମନୋଜ୍ଞ ବିଶ୍ଳେଷଣ, ଭଞ୍ଜ ସାହିତ୍ୟ ସମାଲୋଚନା ପତ୍ରିକା 'ବହିତ୍ର'ପ୍ରଥମ ସଂଖ୍ୟାରେ ପ୍ରକାଶିତ ହୋଇ ଆଲୋଚକଙ୍କ ପାଇଁ ଅନେକ ଉପାଦାନ ଯୋଗାଇ ଦେଇଛି ।

**କବିସମ୍ରାଟଙ୍କ ଶ୍ରେଷ୍ଠକୃତିର ସମୀକ୍ଷଣ :**- ଉପେନ୍ଦ୍ର କବି-ପ୍ରତିଭାର ମାନଦଣ୍ଡରୂପେ ବିବେଚିତ ଔପନ୍ୟାସିକ କାବ୍ୟ ଲାବଣ୍ୟବତୀ ଓ ଐତିହାସିକ କାବ୍ୟ ବୈଦେହୀଶ ବିଳାସକୁ ଆଧାର କରି ବହିତ୍ର -୩ ଓ ୪ ସଂଖ୍ୟାରେ ସେ ଯେଉଁ ପାଣ୍ଡିତ୍ୟପୂର୍ଣ୍ଣ ମନ୍ତବ୍ୟ ଦେଇଛନ୍ତି

ତାହା ଶତପଥୀ ମହାଶୟଙ୍କ ସାମାଲୋଚନ ରୀତିର ଔଜ୍ଜ୍ୱଲ୍ୟ ପ୍ରକାଶକରେ । ଏତଦ୍ ବ୍ୟତୀତ 'ବହିତ୍ର' ସପ୍ତମ, ଅଷ୍ଟମ ଓ ଦଶମ ସଂଖ୍ୟାରେ ଯଥାକ୍ରମେ ସୁଭଦ୍ରା ପରିଣୟ, ରସଲେଖା ଓ ଛାନ୍ଦଭୂଷଣ କାବ୍ୟତ୍ରୟର ସାରସ୍ୱତ ସୌନ୍ଦର୍ଯ୍ୟ, ରସମାଧୁର୍ଯ୍ୟ, ଅଳଂକରଣ ଚାତୁର୍ଯ୍ୟ, ବିଷୟବିନ୍ୟାସ କୌଶଳ ଇତ୍ୟାଦିର ମୂଲ୍ୟାୟନ ଭଞ୍ଜଶ୍ରୀ ଶ୍ରୀଧରଙ୍କ ସାହିତ୍ୟ ସାଧନାର ଅନ୍ୟତମ ଫଳପ୍ରସୂ ଉଦ୍ୟମ ।

ସାହିତ୍ୟ ସାଧକ ଉପେନ୍ଦ୍ର :- ଏହି ପ୍ରବନ୍ଧ ଭଞ୍ଜନଗରସ୍ଥ ମଧ୍ୟାହ୍ନ ସାହିତ୍ୟ ସଂସଦର ମୁଖପତ୍ର ଭଞ୍ଜବାଣୀରେ ପ୍ରକାଶିତ । ସେଥିରେ ପ୍ରାଚ୍ୟ କାବ୍ୟତତ୍ତ୍ୱ ଆଧାରିତ ସାହିତ୍ୟର ସ୍ୱରୂପ ଓ ଉପେନ୍ଦ୍ରଙ୍କ କୃତିରେ ସେହି ସବୁତତ୍ତ୍ୱର ଯଥାର୍ଥ ପ୍ରତିଫଳନ ଅବଲୋକନ ପୂର୍ବକ ଦେଖାଇଦେବାରେ ପ୍ରାବନ୍ଧିକଙ୍କ ପ୍ରଜ୍ଞା ମନୋଜ୍ଞ ରୀତିରେ ବିଳସିତ ।

କବିସମ୍ରାଟଙ୍କ ସମୟ ନିର୍ଣ୍ଣୟ :- ବହୁ ଐତିହାସିକ ତଥ୍ୟ ସଂଗ୍ରହ କରି ସ୍ୱକୀୟ ଜ୍ୟୋତିବିଦ୍ୟା ଆଧାରରେ କବିଙ୍କ ଜନ୍ମସମୟ, ଗ୍ରହନକ୍ଷତ୍ରାଦିଙ୍କ ସ୍ଥିତି ଆଦି ନିର୍ଦ୍ଧାରଣ ପୂର୍ବକ ସେ ଯେଉଁ ବିଶ୍ୱସନୀୟ ଜନ୍ମକୁଣ୍ଡଳୀ ଆବିଷ୍କାର କରିଛନ୍ତି ତାହା ବାସ୍ତବରେ ଅଭିନନ୍ଦନୀୟ । ଏହି ପ୍ରଶଂସନୀୟ ଉଦ୍ୟମ କବି ଉପେନ୍ଦ୍ରଙ୍କ ସାହିତ୍ୟିକ, ସାମାଜିକ ତଥା ରାଜନୀତିକ ପରିବେଶର ଅନୁଶୀଳନ ଦିଗରେ ଉଲ୍ଲେଖନୀୟ ଦିଗଦର୍ଶନ ଯେ ଦେଇପାରିଛି ଏଥିରେ ସନ୍ଦେହର ଅବକାଶନାହିଁ ।

ସାମଗ୍ରିକ ଭାବେ ଦୃଷ୍ଟିପାତ କଲେ ମନେ ହୁଏ , ଭଞ୍ଜସାହିତ୍ୟର ଅନନ୍ୟ ସାଧକ ଶ୍ରୀଧରଙ୍କ ଉପାସନା ଓଡିଆ ଭାଷା ସାହିତ୍ୟର ଇତିହାସକୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ କାଳଜୟୀ ମର୍ଯ୍ୟାଦାରେ ନିଜକୁ ବିଭୂଷିତ କରିଅଛି । ବହୁ ପରବର୍ତ୍ତୀ ଉପେନ୍ଦ୍ର ସାହିତ୍ୟ ସମାଲୋଚକ ପଣ୍ଡିତ ମହାଶୟଙ୍କ ଅନୁଶୀଳିତ ସରଣୀକୁ ଅନୁସରଣକରି ସ୍ୱକୀୟ ସମୀକ୍ଷଣ ପଦ୍ଧତିକୁ ପୁଷ୍କଳ କରିଛନ୍ତି । ଉପେନ୍ଦ୍ର ସାହିତ୍ୟର ଶ୍ରୀକୁ ଧାରଣକରି ସେ ଯେଉଁ ମାନଦଣ୍ଡ ପ୍ରସ୍ତୁତ କରିଯାଇଛନ୍ତି । ତାହା ଭଞ୍ଜଶ୍ରୀ ଉପାଧି ସହିତ ସ୍ୱନାମ ଶ୍ରୀଧରକୁ ସାର୍ଥକ କରିଛି । ଏହି ସ୍ମୃତି ପ୍ରବନ୍ଧର ଲେଖକଙ୍କ ସେଥିଲେ ପିତୃବ୍ୟ । ମହାବିଦ୍ୟାଳୟର ଛାତ୍ରାବସ୍ଥାରୁ ଅଧ୍ୟାପକ ଜୀବନ ଯାପନ ଯାଏଁ ଭଞ୍ଜ ସାହିତ୍ୟର ଅଧ୍ୟୟନ, ଅଧ୍ୟାପନ ତଥା ଗବେଷଣା ଦିଗରେ ତାଙ୍କର ପ୍ରେରଣା ମୋତେ ଯେଉଁ ଆନନ୍ଦ ଓ ତୃପ୍ତି ପ୍ରଦାନ କରିଛି ତାହା ଭୁଲିବାର ନୁହେଁ । ଆଜି ସେହି ମହାନୁଭବଙ୍କ ପ୍ରଥମ ପୁଣ୍ୟ ଶ୍ରାଦ୍ଧ ସମ୍ବସରରେ ଆନ୍ତରିକ ଶ୍ରଦ୍ଧା ଓ ଭକ୍ତି ଅର୍ଘ୍ୟ ଅର୍ପଣ କରି ନିଜକୁ କୃତାର୍ଥ ମନେକରେ ।

ହେ କାଳଜୟୀ ସାଧକ ! ତୁମେ ଅବିନଶ୍ୱର କୀର୍ତ୍ତିର ଅଧିକାରୀ "ତୁମ୍ଭ ମାଟିଦେହ ଗ୍ରାସିଛି ଶ୍ମଶାନ । ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ ।"- ପ୍ରଣାମ ।

*****

# ଉପେନ୍ଦ୍ର ଭଞ୍ଜଙ୍କୁ ଚିହ୍ନି ଚିହ୍ନେଇବାରେ ସ୍ୱର୍ଗୀୟ ପଣ୍ଡିତ ଶ୍ରୀଧର ଶତପଥୀ

ଇଂ. ଚନ୍ଦ୍ରଶେଖର ନନ୍ଦ

ଉପକ୍ରମ

ଉପେନ୍ଦ୍ରଭଞ୍ଜ ଓଡିଆ ସାହିତ୍ୟରେ କବି ସମ୍ରାଟ ଭାବରେ ସୁବିଦିତ । ସପ୍ତଦଶ ଶତାବ୍ଦୀର ଶେଷଭାଗରେ ନିଜର ଲେଖନୀ ଚାଳନା କରି ସେ ଓଡିଆ କାବ୍ୟକୁ ସଂସ୍କୃତ କାବ୍ୟ ସ୍ତରକୁ ଉନ୍ନୀତ କରିବାର ସାମର୍ଥ୍ୟ ପ୍ରତିପାଦନ କଲେ । ଆଧ୍ୟାତ୍ମିକତାକୁ ମୂଳଭିତ୍ତିକରି, ଅଳଙ୍କାର ଶାସ୍ତ୍ରର ସମସ୍ତ ଭୂଷଣକୁ ଅଙ୍ଗୀଭୂତ କରି, ସଂଗୀତ ମୂର୍ଚ୍ଛନାରେ ଅନୁରଣିତ କରି ଓଡିଆ ଜନଜୀବନ ତଥା ସଂସ୍କୃତିକୁ ନିଜ କାବ୍ୟରେ ପରିବେଷଣ କଲେ । ୧୮୭୦ ମସିହାରେ ଯେତେବେଳେ ଓଡିଆ ଭାଷା ବିଲୋପ ଆନ୍ଦୋଳନ କରାଗଲା ସେତେବେଳେ ଯେଉଁ କବି ମାନଙ୍କର କାବ୍ୟ ସମୁହ ଓଡିଆ ସାହିତ୍ୟର ପ୍ରାଚୀନତା, ପୁଷ୍ଟଳତା ତଥା ସ୍ୱତନ୍ତ୍ରତା ପ୍ରତିପାଦନ କରି ଉକ୍ତ ଆନ୍ଦୋଳନକୁ ପ୍ରତିହତ କଲା, ସେମାନଙ୍କ ମଧରେ ଭଞ୍ଜ କାବ୍ୟହିଁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା ।

ଯେଉଁ କବି ନିଜର ଭାଷା ପାଇଁ, ନିଜର ଜାତି ପାଇଁ ଏତେ କିଛି କାର୍ଯ୍ୟ କରିଯାଇଛନ୍ତି ତାଙ୍କ ବିଷୟରେ ଜାଣିବା ପ୍ରତ୍ୟେକ ଓଡିଆର ଅବଶ୍ୟ କର୍ତ୍ତବ୍ୟ ।

ଯେଉଁ ସମୟରେ ଏଠି ଘୁମୁସରରେ ଉପେନ୍ଦ୍ରଭଞ୍ଜ ଜନ୍ମ ଗ୍ରହଣ କରିଥିଲେ ତା'ର ଶହେ ବର୍ଷ ପୂର୍ବରୁ ପାଶ୍ଚାତ୍ୟ ଜଗତରେ ସେକ୍ସପିଅର ଜନ୍ମ ଗ୍ରହଣ କରିଥିଲେ । ସେକ୍ସପିଅରଙ୍କ ସମୟ ୧୫୬୪ ରୁ ୧୬୧୬ ।

ସେକ୍ସପିଅରଙ୍କର ଜନ୍ମ ତାରିଖ ଜଣା ଅଛି, ଷ୍ଟ୍ରାଟଫୋର୍ଡରେ ଯେଉଁ କାଷ୍ଠ ନିର୍ମିତ ଦ୍ୱିତଳ ପ୍ରାସାଦରେ ସେ ଜନ୍ମ ହୋଇଥିଲେ ସେ ପ୍ରାସାଦ ଏବେବି ସୁରକ୍ଷିତ ରହିଛି, ଶିଶୁ ଅବସ୍ଥାରେ ସେ ଯେଉଁ ଝୁଲାରେ ଝୁଲିଥିଲେ ସେ ଝୁଲା ଏବେବି ସଂରକ୍ଷିତ ଅଛି, ଯେଉଁ କଲମରେ ସେ ନାଟକ ଲେଖିଥିଲେ ସେ କଲମ ରହିଛି, ଯେଉଁ ପାଣ୍ଡୁଲିପିରେ ସେ ଲେଖନୀ ଚାଳନା କରିଥିଲେ ସେ ପାଣ୍ଡୁଲିପି ରହିଛି । ସେକ୍ସପିଅରଙ୍କ ପ୍ରେୟସୀ ଆନି ହାତାୱେଙ୍କ ଘର ସୁରକ୍ଷିତ ରହିଛି । ସେକ୍ସପିଅରଙ୍କୁ ଯେଉଁଠି କବର ଦିଆଯାଇଥିଲା ସେ ସ୍ଥାନରେ ଏବେବି ସେ କବର ରହିଛି । ସେକ୍ସପିଅରଙ୍କର ପୂର୍ଣ୍ଣାବୟବ ପ୍ରତିକୃତି ରହିଛି, ପ୍ରତିମୂର୍ତ୍ତି ରହିଛି ।

ଦେଖାଯାଉ ଉପେନ୍ଦ୍ରଭଞ୍ଜଙ୍କର କ'ଣ ଆମେ ସଂରକ୍ଷିତ ରଖିଛୁ ? କ'ଣ ଆମେ ସୁରକ୍ଷିତ ରଖିଛୁ ? ଉପେନ୍ଦ୍ର ଭଞ୍ଜଙ୍କ ସମ୍ବନ୍ଧରେ ଆମେ କ'ଣ ଜାଣିଛୁ ? କେତେ ଜାଣିଛୁ ?

ଏହି ପରିପ୍ରେକ୍ଷୀରେ ଭଞ୍ଜଙ୍କୁ, ଭଞ୍ଜଙ୍କ କୃତିକୁ ଜାଣିବାରେ ଜଣେଇବାରେ ଯେଉଁ ସାର୍ଥକ ଜନ୍ମା ପୁରୁଷମାନଙ୍କର ଅବଦାନ ରହିଛି, ସେମାନଙ୍କ ମଧ୍ୟରେ ଶ୍ରୀଧର ଶତପଥୀ ଅନ୍ୟତମ । ତାଙ୍କର ସେହି ଭୂମିକାକୁ ଏ ପ୍ରବନ୍ଧର ଆଲୋଚନା ପରିସରଭୁକ୍ତ କରାଯାଉ ।

**ଭଞ୍ଜଙ୍କ ବଂଶଲତା**

ଉପେନ୍ଦ୍ରଭଞ୍ଜ ବୈଦେହୀଶ ବିଳାସରେ ନିଜ ବଂଶର ନିଜେ ପରିଚୟ ଦେଇ ଲେଖିଛନ୍ତି-

ବରହି ବଂଶେ ଉଭବ ନୃପ ଧନଞ୍ଜୟ
ବିଶିଷ୍ଟେ ଘୁମୁସର ଅଧିପ ଗୁଣାଳୟ ଯେ ।
ବେନି ଅର୍ଥେ ସେ କବି ଗଣେଶ ବୋଲି ଜାଣ
ବନ୍ଦନ ତଦ୍ଭବ ତାଙ୍କ ନନ୍ଦନ ପ୍ରମାଣ ଯେ ।
ବସୁଧାପତି ସେ ନୀଳକଣ୍ଠ ନାମେ ଖ୍ୟାତ
ବିଧାନରେ ମୁହିଁ ତାହାଙ୍କର ଜ୍ୟେଷ୍ଠ ସୁତ ଯେ ।
ବୀରବର ଉପଇନ୍ଦ୍ର ମୋର ନାମ
ବାରେ ବାରେ ସେବାରେ ମନାଇଁ ସୀତାରାମ ଯେ ।
ବିଚିତ୍ର କବିତ୍ୱ ମାର୍ଗେ ପ୍ରସରିଲା ବୁଦ୍ଧି
ବିରଚିଲି ରାମାୟଣ ଏ ମୋ ବଡ ସିଦ୍ଧି ଯେ ।

ଘୁମୁସର ଇତିହାସ ସମ୍ବନ୍ଧରେ ମିଳୁଥିବା ବିଭିନ୍ନ ତାଳପତ୍ର ପୋଥିରୁ ବହୁ ଆଲୋଚକ ଉପେନ୍ଦ୍ର ଭଞ୍ଜଙ୍କ ବଂଶ ଖୋଜିବାକୁ ପ୍ରଚେଷ୍ଟା କରିଛନ୍ତି ।

ଐତିହାସିକ ସତ୍ୟନାରାୟଣ ରାଜଗୁରୁ ୧୯୩୨ ମସିହାରେ ଘୁମୁସରର ଶ୍ରୀକରପୁର ଶାସନ ନିବାସୀ ପଣ୍ଡିତ ବାସୁଦେବ ମହାପାତ୍ରଙ୍କଠାରୁ 'ଭଞ୍ଜ ବଂଶାବଳୀ' ନାମକ ଖଣ୍ଡିଏ ସଂସ୍କୃତ ତାଳପତ୍ର ପୋଥିପାଇ ତାକୁ ସେହି ବର୍ଷର 'ପ୍ରାଚୀ' ଇଂରାଜୀ ପତ୍ରିକାରେ ଗୋଟିଏ ପ୍ରବନ୍ଧ ସହିତ ପ୍ରକାଶ କରିଥିଲେ ଯାହା ଏଠାରେ ସ୍ଥାନୀତ କରାଯାଉଅଛି ।(୧)

ଶ୍ରୀଧର ଶତପଥୀ ପୁରପଲ୍ଲୀରୁ 'ଘୁମୁସର ଇତିହାସ' ୫ଖଣ୍ଡ ପୋଥି ପାଇ, ତାହାକୁ ଭିତ୍ତିକରି ପ୍ରକାଶ କରିଥିବା ଭଞ୍ଜଙ୍କ ବଂଶଲତା ତୁଳନାତ୍ମକ ଭାବରେ ଏଠାରେ ଉପସ୍ଥାପନ କରାଯାଉଅଛି । (୨)






<u>ଶ୍ରୀଧର ଶତପଥୀଙ୍କ ଦ୍ୱାରା ପ୍ରଦତ୍ତ</u>

(ଘୁମୁସର ରାଜ୍ୟର ପ୍ରଥମ ରାଜା ରଘୁନାଥ ଭଞ୍ଜ ଖ୍ରୀ ୮୩୩ରେ ସିଂହାସନ ଆରୋହଣ କରିଥିଲେ )






(୧୮୩୫ରେ ଘୁମୁସର ରାଜ୍ୟ ସରକାରୀ ହେଲା)

୧୯୧୩ ମସିହାରେ ପ୍ରକାଶିତ ତାରିଣୀ ଚରଣ ରଥଙ୍କ 'ଗୁମୁସର ଇତିହାସ', ୧୯୫୧ ମସିହାରେ ପ୍ରକାଶିତ ମାଗୁଣି ଦାଶଙ୍କ 'ଭଞ୍ଜ ବଂଶାନୁଚରିତ', ୧୯୭୩ ମସିହାରେ ଦୁର୍ଗାମାଧବ ନନ୍ଦଙ୍କ ଦ୍ୱାରା ପ୍ରକାଶିତ ସୂର୍ଯ୍ୟମଣି ଚ୍ୟାଉ ପଟ୍ଟନାୟକଙ୍କ ରଚିତ 'ଭଞ୍ଜ ବଂଶାବଳୀ', ୧୯୭୮ ମସିହାରେ ମାଗୁଣି ଦାଶଙ୍କ ଦ୍ୱାରା ପ୍ରକାଶିତ ଗଙ୍ଗାପାଣି ମହାପାତ୍ରଙ୍କ ରଚିତ 'ଭଞ୍ଜ ବଂଶ ଓ ଘୁମୁସର ବିଦ୍ରୋହ' ପୁସ୍ତକ ଗୁଡିକରେ ମଧ୍ୟ ଭଞ୍ଜ

ବଂଶଲତାର ସୂଚନା ଦିଆଯାଇଛି । ମାଗୁଣି ଦାଶ ଘୁମୁସର କୁଲାଡ ନିକଟ ଗୋପିନାଥପୁର ଶାସନ ନିବାସୀ ପଣ୍ଡିତ ସୁଦର୍ଶନ ହୋତାଙ୍କଠାରୁ ଗଦ୍ୟ ଆକାରରେ ଲିଖିତ 'ଭଞ୍ଜ ବଂଶାବଳୀ' ପୋଥି ସଂଗ୍ରହ କରି ୧୯୮୨ ମସିହାରେ ସେ ଖଣ୍ଡିକୁ ପୁସ୍ତକ ଆକାରରେ ପ୍ରକାଶ କରିଛନ୍ତି । (୩)

ସତ୍ୟନାରାୟଣ ରାଜଗୁରୁ, ମାଗୁଣି ଦାଶ, ଶ୍ରୀଧର ଶତପଥୀ ଏବଂ ଅନ୍ୟାନ୍ୟ ଆଲୋଚକମାନଙ୍କ ଦ୍ୱାରା ପ୍ରଦତ୍ତ ଭଞ୍ଜଙ୍କ ବଂଶଲତା ଅନୁଧ୍ୟାନ କଲେ ଦେଖାଯାଏ ସେଗୁଡିକ ମଧ୍ୟରେ ବହୁ ତାରତମ୍ୟ ରହିଛି । ତନ୍ମଧ୍ୟରୁ କେଉଁଟି ଠିକ୍ କେଉଁଟି ଭୁଲ ତାହା ଆଲୋଚନା ତଥା ଅନୁସନ୍ଧାନ ସାପେକ୍ଷ ।

**ଭଞ୍ଜଙ୍କ ଜାତକ**

ଲକ୍ଷ୍ମୀନାରାୟଣ ସାହୁ ଉପେନ୍ଦ୍ରଭଞ୍ଜଙ୍କ ବଂଶଧର କୁଲାଡଗଡ ନିବାସୀ ଶ୍ରୀ ପୂର୍ଣ୍ଣଚନ୍ଦ୍ର ଭଞ୍ଜଙ୍କ ଠାରୁ ପ୍ରାପ୍ତ ଉପେନ୍ଦ୍ରଭଞ୍ଜଙ୍କ ଜାତକର ନକଲ କଳିଙ୍ଗଭାରତୀର ପ୍ରତିଷ୍ଠାତା ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ ହସ୍ତରେ ୧୯୫୯ ମସିହାରେ ଅର୍ପଣ କରିଥିଲେ ଯାହାର ନକଲ ନିମ୍ନରେ ପ୍ରଦତ୍ତ ହେଲା । (୪)

| | | |
|---|---|---|
| ଚ<br>ରା | X | ଶୁ<br>ବୁ |
| X | ୪/୨ | ର |
| X<br>X | ଶ<br>ବୃ | କେ<br>ମ |

ଶ୍ରୀଧର ଶତପଥୀ ତାଙ୍କ ରଚିତ ଭଞ୍ଜ ସନ୍ଦର୍ଭରେ ଭଞ୍ଜ ଜାତକ ସଂକ୍ରାନ୍ତରେ ଲେଖିଛନ୍ତି- ନିକଟ ଅତୀତରେ ଗୋଟିଏ ପୋଥି ପ୍ରାପ୍ତ ହେଲା । ଏହା ୧୪୦ ବର୍ଷ

ପୂର୍ବେ , ମୋର ପ୍ରପିତାମହଙ୍କ ଦ୍ୱାରା ଲିଖିତ ଗୋଟିଏ ଜ୍ୟୋତିଷ ଗ୍ରନ୍ଥ । ଏହି ପୋଥିରେ ଗୁମୁସର ରାଜା କୃଷ୍ଣ ଭଞ୍ଜଙ୍କର ପୁତ୍ର ତ୍ରିବିକ୍ରମ ଭଞ୍ଜଙ୍କର ଟିପଣା ଅଛି ଏବଂ ଉପେନ୍ଦ୍ର ଭଞ୍ଜଙ୍କର ଟିପଣା ମଧ୍ୟ ଅଛି । ୧୫୯୮ ଶକାବ୍ଦ ମାଘ ଶୁକ୍ଲ ଚତୁର୍ଥୀ ଗତ ପଞ୍ଚମୀ ଶୁକ୍ରବାରେ ରାତ୍ର ଦୁଇଦଣ୍ଡଠାରେ ଗୁମୁସର ଯୁବରାଜ ଶ୍ରୀ ନୀଳକଣ୍ଠ ଭଞ୍ଜଙ୍କ ପ୍ରଥମ ପୁତ୍ର ଜନ୍ମ, ରାଶି ନକ୍ଷତ୍ର ୨୭ ରେବତୀ ମୀନ, ଜନ୍ମ କାଳକୁ ବୁଧ ମହାଦଶା ବାକି ବ ୧୦/୧୦/୧୨ ଦିନ ପଞ୍ଚମ ଓ ରାଜ୍ୟାଧିପତି ପଞ୍ଚମସ୍ଥ, ଭାଗ୍ୟରେ ଚନ୍ଦ୍ର, ବୃହସ୍ପତି, ଶୁକ୍ରଯୁକ୍ତ।ଏହି କାରଣରୁ ମହାକବି ଯୋଗ । ସପ୍ତମରେ ରବି, ରାହୁ ଯୁକ୍ତ ଓ ସପ୍ତମାଧିପତି ବ୍ୟୟସ୍ଥ । ଏଥିରୁ ଦ୍ୱିକଳତ୍ର ଯୋଗ । ଶ୍ରୀଧର ଶତପଥୀଙ୍କ ରଚିତ 'ଅମର ସନ୍ତାନ କବିସମ୍ରାଟ ଉପେନ୍ଦ୍ରଭଞ୍ଜ' ପୁସ୍ତକରେ ସନ୍ନିବେଶିତ ଜାତକର ନକଲ ନିମ୍ନରେ ପ୍ରଦତ୍ତ ହେଲା ।(୫)

| | | |
|---|---|---|
| X ଶ | X | ଚ ବୃ ଶୁ ବୁ |
| ଲ ଲେ | ୨୭/୧୨ | ର ରା |
| X X | X | X ମ |

ଶ୍ରୀଧର ଶତପଥୀଙ୍କର ଜ୍ୟୋତିଷ ଶାସ୍ତ୍ରରେ ପାରଦର୍ଶିତା ଯୋଗୁ ତାଙ୍କୁ ୧୯୪୬ ମସିହାରେ 'ଜ୍ୟୋତିର୍ବିନୋଦ' ଉପାଧି ଦିଆଯାଇଥିଲା । ତେଣୁ ଭଞ୍ଜ ଜାତକର ଫଳ ସମ୍ବନ୍ଧରେ ତାଙ୍କ ଲିଖିତ ବକ୍ତବ୍ୟ ଉପରେ କିଛି କହିବାର ନାହିଁ ।

କିନ୍ତୁ ଗୋଟିଏ ବ୍ୟକ୍ତିର ଦୁଇଟି ଭିନ୍ନ ଜାତକ ହୋଇନପାରେ । ତେଣୁ ଉପେନ୍ଦ୍ରଙ୍କ ସମ୍ବନ୍ଧରେ ମିଳିଥିବା ଉପରୋକ୍ତ ଦୁଇଟି ଯାକ ଜାତକ ତ ସତ ହୋଇନ ପାରେ, ଗୋଟିଏ ସତ ଗୋଟିଏ ମିଛ ଅଥବା ଦୁଇଟି ଯାକ ମିଛ ହୋଇଥିବାର ସମ୍ଭାବନାକୁ ଏଡାଇ ଦିଆଯାଇ ନପାରେ । ତେଣୁ ଏହାର ସତ୍ୟାସତ୍ୟ ଆବିଷ୍କାର କରିବା ପାଇଁ ଅଧିକ କିଛି ପ୍ରମାଣ

ଯୋଗ୍ୟ ତଥ୍ୟକୁ ପ୍ରତୀକ୍ଷା କରିବା ଉଚିତ ହେବ ।

ଭଞ୍ଜଙ୍କ ଜନ୍ମ

ଭଞ୍ଜ ଗବେଷକମାନଙ୍କଦ୍ୱାରା ଉପନୀତ ହୋଇଥିବା ଉପେନ୍ଦ୍ରଭଞ୍ଜଙ୍କ ଜନ୍ମ ସମୟ ନିମ୍ନରେ ପ୍ରଦତ୍ତ ହେଲା ।

| | |
|---|---|
| ଅନନ୍ତ ପଦ୍ମନାଭ ପଟ୍ଟନାୟକ - | ୧୬୭୦ (୬) |
| ଦାମୋଦର ଦାସ- | ୧୬୭୦ (୭) |
| ଆର୍ତ୍ତବଲ୍ଲଭ ମହାନ୍ତି- | ୧୬୭୦ (୮) |
| ଶ୍ରୀଧର ଶତପଥୀ - | ୧୬୭୬(୫) |
| ଗୌରୀକୁମାର ବ୍ରହ୍ମା- | ୧୬୭୫-୭୬ (୯) |
| ତାରିଣୀ ଚରଣ ରଥ- | ୧୬୮୫ (୧୦) |
| ବିଚ୍ଛନ୍ଦ ଚରଣ ପଟ୍ଟନାୟକ- | ୧୬୮୫ (୧) |
| ହରେକୃଷ୍ଣ ମହତାବ - | ୧୬୮୫ (୧୧) |
| ସୂର୍ଯ୍ୟନାରାୟଣ ଦାଶ - | ୧୬୮୮ (୧୨) |

କଥିତ ଅଛି ଉପେନ୍ଦ୍ରଭଞ୍ଜ ନିଜ ଜେଜେବାପା ଧନଞ୍ଜୟ ଭଞ୍ଜଙ୍କଦ୍ୱାରା ରଚିତ ରଘୁନାଥବିଳାସଠାରୁ ଏକ ଉତ୍କୃଷ୍ଟ କାବ୍ୟ ରଚନା କରିପାରିବେ ବୋଲି ପ୍ରତିଶ୍ରୁତି ଦେଇ ଏକବର୍ଷ ମଧ୍ୟରେ ବୈଦେହୀଶ ବିଳାସ କାବ୍ୟ ରଚନା କରିଥିଲେ ଓ ଧନଞ୍ଜୟ ଭଞ୍ଜଙ୍କୁ ଅର୍ପଣ କରିଥିଲେ । ଧନଞ୍ଜୟ ଭଞ୍ଜ ୧୭୦୧ ମସିହାରେ ପ୍ରାଣତ୍ୟାଗ କରିଥିଲେ । ତେଣୁ ବୈଦେହୀଶ ବିଳାସ କାବ୍ୟ ରଚନା ବେଳକୁ ଉପେନ୍ଦ୍ରଙ୍କ ବୟସ ଆନୁମାନିକ ୨୪ରୁ ୩୦ ବର୍ଷ ହୋଇଥିବ ଭାବି କେତେକ ଆଲୋଚକ ତାଙ୍କର ଜନ୍ମ ସମୟ ୧୬୭୦ରୁ ୧୬୭୬ ମଧ୍ୟରେ ନିର୍ଦ୍ଧାରଣ କରନ୍ତି ।

ଅନ୍ୟ କେତେକ ଆଲୋଚକ ଉପେନ୍ଦ୍ରଙ୍କ ଅସାଧାରଣ କବି ପ୍ରତିଭାକୁ ଆଖି ଆଗରେ ରଖି, ଅପ୍ରକାଶିତ ଘୁମୁସର ଇତିହାସକୁ ମୂଳ ଭିତ୍ତିକରି ବାର ବର୍ଷ ବେଳକୁ ରାମ ତାରକ ମନ୍ତ୍ର ସିଦ୍ଧ ହୋଇ ତା'ର ଅବ୍ୟବହିତ ପରେ ପରେ ଉପେନ୍ଦ୍ର ବୈଦେହୀଶ ବିଳାସ ରଚନା କରିଥିବାର ଅନୁମାନ କରନ୍ତି ଏବଂ ତଦନୁଯାୟୀ ଉପେନ୍ଦ୍ରଙ୍କ ଜନ୍ମ ୧୬୮୫ରୁ ୧୬୮୮ ମଧ୍ୟରେ ହୋଇଥିବାର ଉଲ୍ଲେଖ କରନ୍ତି ।

ଅନ୍ୟ କେତେକ ଗବେଷକ କିମ୍ବଦନ୍ତୀକୁ ବାଦ ଦେଇ ଭଞ୍ଜଙ୍କ ରସଲେଖା କାବ୍ୟର ସମୟକୁ ନେଇ ତାଙ୍କର ଜନ୍ମ ସମୟ ସ୍ଥିର କରନ୍ତି । ରସଲେଖା କାବ୍ୟରେ

ଲେଖାଅଛି -''ଦିବ୍ୟସିଂହ ଗଜପତି ଅଙ୍କ ସପତବିଂଶତି ଶେଷଦିନେ ଶେଷ ଏହି ଗୀତ '' । ଗଜପତି ଦିବ୍ୟସିଂହ ଦେବଙ୍କ ୨୭ ଅଙ୍କର ସମୟ ୪-୯-୧୭୦୯ ରୁ ୨୪-୮-୧୭୧୦ । ଅର୍ଥାତ୍ ରସଲେଖା ୧୭୧୦ ମସିହା ଅଗଷ୍ଟ ମାସ ୨୪ ତାରିଖ ଦିନ ସମାପ୍ତ ହୋଇଥିଲା । କାବ୍ୟକଳା ଦୃଷ୍ଟିରୁ ବୈଦେହୀଶ ବିଳାସକୁ ରସଲେଖାରେ ବହୁପରବର୍ତ୍ତୀ ରଚନା ବୋଲି ଗ୍ରହଣ କରି ଏହି ଆଲୋଚକମାନେ ରସଲେଖା କବିଙ୍କର ପ୍ରତିଭା ଉନ୍ମେଷ ସମୟର ଲେଖା ଭାବି ତାଙ୍କର ବୟସ ସେତେବେଳକୁ ୨୫ ବର୍ଷ ହୋଇଥିବାର ଅନୁମାନ କରନ୍ତି । ତେଣୁ ସେମାନଙ୍କ ମତରେ ଉପେନ୍ଦ୍ର ୧୬୮୫ମସିହାରେ ଜନ୍ମ ହୋଇଥିଲେ ।

ଶ୍ରୀଧର ଶତପଥୀଙ୍କ ମତରେ ଉପେନ୍ଦ୍ର ୧୬୭୬ ମସିହା ଶ୍ରୀପଞ୍ଚମୀଦିନ ଜନ୍ମ ଗ୍ରହଣ କରିଥିଲେ । ଏହାର ଯଥାର୍ଥତା ସେ ତାଙ୍କ ଦ୍ୱାରା ସଂଗୃହୀତ ଭଞ୍ଜଙ୍କ ଜାତକ ଅନୁସାରେ ଘୋଷଣା କରିଛନ୍ତି । ସେ ରସଲେଖାକୁ ବୈଦେହୀଶ ବିଳାସର ପରବର୍ତ୍ତୀ କାବ୍ୟ ଭାବରେ ଅଭିହିତ କରିଛନ୍ତି । ନିଜ ମତ ପାଇଁ ଯୁକ୍ତି ଉପସ୍ଥାପନ କରି ସେ କହନ୍ତି ଶେଷ ଜୀବନ ବେଳକୁ ବୈରାଗ୍ୟ ଭାବ ଜାତ ହେବାରୁ ଉପେନ୍ଦ୍ର ରସଲେଖା କାବ୍ୟରେ କୌଣସି ଉପାଧି ବ୍ୟବହାର ନ କରିବାକୁ ସମୀଚୀନ ମନେ କରିଛନ୍ତି ।

ଆମ ପାଖରେ ଗଚ୍ଛିତ ଥିବା ସତ୍ୟନିଷ୍ଠ ତଥ୍ୟଟି ହେଉଛି ରସଲେଖା ୧୭୧୦ ମସିହାରେ ଲିଖିତ । କିମ୍ବଦନ୍ତିକୁ ବାଦଦେଇ, ଅନୁମାନକୁ ପରିହାର କରି ଅନ୍ୟ କିଛି ସତ୍ୟ ଅନୁସନ୍ଧାନ କରି ଭଞ୍ଜଙ୍କ ଜନ୍ମ ପର୍ଯ୍ୟନ୍ତ ପହଞ୍ଚି ପାରିଲେ ତାହା ସ୍ୱତଃସିଦ୍ଧ ଭାବରେ ଗୃହୀତ ହୋଇ ପାରନ୍ତା ।

**ଭଞ୍ଜଙ୍କ ଦେହାବସାନ**

ଜନଶ୍ରୁତି ଅଛି ପୁରୀଠାରେ କବି ଦୀନକୃଷ୍ଣ ଦାସଙ୍କ ସହିତ ଉପେନ୍ଦ୍ରଙ୍କ ସାକ୍ଷାତ ଆଲୋଚନା ହୋଇଥିଲା । ରସକଲ୍ଲୋଳ ଠାରୁ ମହତ୍ତର କାବ୍ୟ ରଚନା କରିବା ମାନସରେ ସେ କଳାକଉତୁକ ରଚନା କଲେ ଓ ଦୀନକୃଷ୍ଣଙ୍କୁ ଦେଖାଇଲେ । ଦୀନକୃଷ୍ଣଙ୍କ ସମୟ ୧୬୫୦ ରୁ ୧୭୧୦ । (୧୩)

ରସଲେଖାରୁ ଜଣାପଡେ ଉପେନ୍ଦ୍ର ଗଜପତି ଦିବ୍ୟସିଂହ ଦେବଙ୍କ ସମସାମୟିକ । ଦିବ୍ୟସିଂହ ଦେବଙ୍କ ସମୟ ୧୬୮୩ ରୁ ୧୭୧୬ ।

ନୀଳାଦ୍ରୀଶ ଚଉତିଶାର ନାମଚିତ୍ର କାବ୍ୟବନ୍ଧୋଦୟରେ ଉଲ୍ଲେଖ ନାହିଁ । ତେଣୁ ଏହା ତାଙ୍କର ପରବର୍ତ୍ତୀ ରଚନା, ନୀଳାଦ୍ରୀଶ ଚଉତିଶାରେ ଭାବାବେଗରେ କବି ଜଗନ୍ନାଥଙ୍କୁ କହୁଛନ୍ତି- ସଂସାରରେ ଅର୍ଜିତ ଖ୍ୟାତିକୁ ମୁଁ ତୁମ ପାଦପଦ୍ମରେ ସମର୍ପଣ କରୁଛି । ମୋ

ଶରୀର ତ କ୍ଷୟ ଅବସ୍ଥାକୁ ଆସିଲାଣି, ମୋତେ ଜାଗତିକ ଜଞ୍ଜାଳରୁ ମୁକ୍ତି ଦିଅ। ସମ୍ଭବତଃ ଏହା ତାଙ୍କର ଶେଷ ଲେଖା। (୧୪)

କାବ୍ୟିକ ମୂଲ୍ୟବୋଧକୁ ମୂଳାଧାର କରି ତୁଳନା କଲେ ଭଞ୍ଜଙ୍କର ବହୁ କାବ୍ୟ ରସଲେଖାର ପରେ ଲେଖା ଯାଇଥିବାର ସମ୍ଭାବନା। ସେସବୁ କାବ୍ୟ ରଚନା କରିବା ପାଇଁ କିଛି ବର୍ଷ ନିଶ୍ଚୟ ଅତିବାହିତ ହୋଇଥିବ।

ଏହି ସବୁ ଦୃଷ୍ଟିରୁ ବହୁ ଆଲୋଚକଙ୍କ ମତରେ ୧୭୨୫ ମସିହାରେ ବା ତାହାର ପାଖାପାଖି ଉପେନ୍ଦ୍ରଭଞ୍ଜଙ୍କର ଦେହାବସାନ ହୋଇଥିଲା।

ରଜତ କୁମାର କର ବଡମ୍ବା ରାଜବଂଶରୁ ସଂଗୃହୀତ ଓଡିଶା ମ୍ୟୁଜିୟମର ପୋଥି ସଂଖ୍ୟା ୦୨.୧୯୨୭ ଲାବଣ୍ୟବତୀ ପୋଥିରେ ପ୍ରକାଶିତ ଲାବଣ୍ୟବତୀ କାବ୍ୟର ଶେଷପଦ ପରେ ଆଉ କେତେ ପଦ ଲେଖା ଥିବାର ଦେଖିଛନ୍ତି। ଉକ୍ତ ପୋଥିରେ ଲେଖାଅଛି ''ଶ୍ରୀ ବୀରକିଶୋର ପଚିଶ ଅଙ୍କେ ଏଗୀତ ପୂର୍ଣ୍ଣ ହେଲା ନିଃଶଙ୍କେ ''। ଶ୍ରୀ ବୀରକିଶୋର ଦେବଙ୍କ ପଚିଶ ଅଙ୍କର ସମୟ ୫-୯-୧୭୫୬ ରୁ ୨୮-୮-୧୭୫୭। ଉପେନ୍ଦ୍ରଭଞ୍ଜ ଯଦି ୧୬୮୫ ବେଳକୁ ଜନ୍ମଲାଭ କରିଥିବେ ତେବେ ୧୭୫୭ ବେଳକୁ ତାଙ୍କୁ ୭୨ ବର୍ଷ ବୟସ ହୋଇଥିବ। ବୀରକିଶୋର ଦେବଙ୍କ ସହ ମରହଟ୍ଟା ମାନଙ୍କ ସଂଘର୍ଷ ଦ୍ୱାରା ବ୍ରଜନାଥ ବଡଜେନା ପ୍ରଭାବିତ ହୋଇଥିଲେ। ଉପେନ୍ଦ୍ରଭଞ୍ଜଙ୍କ ସାହିତ୍ୟର ସେ ସବୁର ସୂଚନା ନ ଥିବାରୁ ମନେହୁଏ ଉପେନ୍ଦ୍ର ବ୍ରଜନାଥଙ୍କ ପ୍ରସିଦ୍ଧି ଆଗରୁ ବିଦାୟ ନେଇଛନ୍ତି। ଉପେନ୍ଦ୍ର ଯଦି ବୀରକିଶୋର ଦେବଙ୍କ ରାଜତ୍ୱର ୨୦ ବର୍ଷ ଖଣ୍ଡେ ଭୋଗ କରିଥିବେ ତେବେ ସେ ଅଶୀ ବର୍ଷ ବଞ୍ଚିଥିବା ଅନୁମାନ କରାଯାଏ। ଉପେନ୍ଦ୍ର ଅଶୀବର୍ଷ ବଞ୍ଚିଥିଲେ ସମ୍ଭବତଃ ୧୭୬୫ ମସିହା ବେଳକୁ ମୃତ୍ୟୁ ବରଣ କରିଥିବେ। (୧୫)

ଶ୍ରୀଧର ଶତପଥୀ ଯଦିଓ କଳାକଉତୁକ ଲେଖାପରେ ଦୀନକୃଷ୍ଣ ଦାସ ଓ ଉପେନ୍ଦ୍ର ଏକତ୍ର ଯାଇ ଦିବ୍ୟସିଂହ ଦେବଙ୍କୁ ସାକ୍ଷାତ କରିଥିବାର ସୂଚନା ଦେଇଛନ୍ତି ତେବେ ଶେଷଜୀବନରେ ପୁରୀରେ କିଛି ଲେଖି ନାହାନ୍ତି। ସେ ଲେଖିଛନ୍ତି ଉପେନ୍ଦ୍ର ଶେଷଜୀବନରେ ପୁରୀରେ ରହି ଜଗନ୍ନାଥଙ୍କୁ ଦର୍ଶନ କରି ନିଜର କ୍ଷିତି ଓ ଖ୍ୟାତିକୁ ଭଗବାନଙ୍କ ନିକଟରେ ସମର୍ପଣ କରିଥିବା ନୀଳାଦ୍ରୀଶ ଚଉତିଶାରୁ ଜଣାପଡେ। ନୀଳାଦ୍ରୀଶ ଚଉତିଶା ଲେଖାଯାଇଥିବାର ସମୟ ସମ୍ବନ୍ଧରେ କୌଣସି ସୂଚନା ଶ୍ରୀଧର ଶତପଥୀଙ୍କ ଲେଖାରୁ ଜଣାପଡୁନାହିଁ। (୨)

ଲାବଣ୍ୟବତୀର ଗୋଟିଏ ପୋଥିକୁ ଉପଜୀବ୍ୟ କରି କୌଣସି ସିଦ୍ଧାନ୍ତରେ ଉପନୀତ ହେବା ଉଚିତ ନୁହେଁ। କାରଣ ତାହା ପ୍ରକ୍ଷିପ୍ତ ହୋଇଥାଇପାରେ। ପୁନଶ୍ଚ

କୈଶୋରରୁ ଲେଖା ଆରମ୍ଭ କରିଥିବା ଉପେନ୍ଦ୍ର ୮୦ ବର୍ଷ ବଞ୍ଚିଥିଲେ ଅନ୍ୟ ଅନେକ କାବ୍ୟ ରଚନା କରିଥିବାର ସୂଚନା ମିଳନ୍ତାଣି । ଦୀନକୃଷ୍ଣ ଦାସଙ୍କ ସହିତ ସାକ୍ଷାତର ପ୍ରମାଣ ଆବଶ୍ୟକ । ନୀଳାଦ୍ରୀଶ ଚଉତିଶାର ରଚନା କାଳ ନିର୍ଣ୍ଣିତ ହୋଇପାରିଲେ ତାଙ୍କର ଦେହାବସାନର ସମୟ ନିର୍ଦ୍ଧାରିତ ହୋଇ ପାରନ୍ତା । କାରଣ ଏହାର ଭାଷା ଓ ଭାବରୁ -

କ୍ଷୟ ତ ହେଲାଣି ଏ ପିଣ୍ଡ
କ୍ଷାଳ ଏ ଇଞ୍ଜାଳର ଦଣ୍ଡ
କ୍ଷାତି ଏ ଉପେନ୍ଦ୍ରର କ୍ଷାତକୁଳ ବେଭାର
କ୍ଷେମ ଚରଣେ ହେଉ ରୁଣ୍ଡ ହେ ।

ଏହା ତାଙ୍କର ଶେଷ ରଚନା ବୋଲି ଗ୍ରହଣ କରାଯାଇପାରେ ।

**ଭଞ୍ଜ ପ୍ରତିକୃତି**

ବିଚ୍ଛନ୍ଦ ଚରଣ ପଟ୍ଟନାୟକ ୧୫-୭-୫୩ ରେ ଉଲ୍ଲେଖ କରିଛନ୍ତି ଯେ ଗୋଟିଏ ତାଳପତ୍ର ପୋଥିରେ ଅଙ୍କା ଯାଇଥିବା ଉପେନ୍ଦ୍ରଭଞ୍ଜଙ୍କର ଖଣ୍ଡିଏ ପ୍ରତିକୃତି ପୁରୀର ଗବେଷକ ଶ୍ରୀ ସଦାଶିବ ରଥଶର୍ମା ତାଙ୍କ ହସ୍ତରେ ଅର୍ପଣ କରିଥିଲେ । କଳାକାର ଶ୍ରୀ ବିଭୂତି ଭୂଷଣ କାନୁନ୍‌ଗୋ ଏଥି ରୁ କବିସ୍ରମାଟଙ୍କର ଖଣ୍ଡିଏ ତ୍ରିରଙ୍ଗ ପ୍ରତିକୃତି ପ୍ରସ୍ତୁତ କରିଅଛନ୍ତି ଓ ଖଣ୍ଡିଏ, ତୈଳଚିତ୍ର ପ୍ରସ୍ତୁତ କରିଅଛନ୍ତି କଳାକାର ଶ୍ରୀ ମନମୋହନ ଘୋଷ । କଟକର ପ୍ରସିଦ୍ଧ କାରିଗର ଶ୍ରୀ ବିଶ୍ୱନାଥ ବେହେରାଙ୍କ ଦ୍ୱାରା କବିସମ୍ରାଟଙ୍କର ଗୋଟିଏ ସୁନ୍ଦର ମୃଣ୍ମୟ ପ୍ରତିମୂର୍ତ୍ତି ମଧ ନିର୍ମାଣ କରାଯାଇଅଛି । (୧)

ଶ୍ରୀଧର ଶତପଥୀ, ତାଙ୍କ ରଚିତ 'ଭଞ୍ଜ ସଂଦର୍ଭ'' ଓ 'ଅମର ସନ୍ତାନ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ' ପୁସ୍ତକ ଦୁଇଟିରେ ଉପେନ୍ଦ୍ରଙ୍କର ଏକ ଭିନ୍ନ ପ୍ରତିକୃତି ଦେଇଛନ୍ତି । ଏ ପ୍ରତିକୃତିର ଗୋଟିଏ ଇତିହାସ ଅଛି । ଭଞ୍ଜ ସାହିତ୍ୟ ପରିଷଦ ଭଞ୍ଜଙ୍କର କୌଣସି ପ୍ରତିକୃତି ନ ପାଇ ପୁରୁଣା ଗୁମୁସର ଗଡ ବାସୁଦେବ ସ୍ୱାମୀଙ୍କ ମନ୍ଦିରରେ ଅବସ୍ଥାପିତ ଗୁମୁସର ରାଜବଂଶର ରାଜା କୃଷ୍ଣଭଞ୍ଜଙ୍କ ପ୍ରତିମୂର୍ତ୍ତିର ସାଦୃଶ୍ୟରେ ନୟାଗଡ ଅଞ୍ଚଳର ଶିଳ୍ପୀ ବିଦ୍ୟାଧର କବିରତ୍ନଙ୍କ ଦ୍ୱାରା ଉପେନ୍ଦଭଞ୍ଜଙ୍କର କାଳ୍ପନିକ ପ୍ରତିମୂର୍ତ୍ତି ତିଆରି କରାଇଲେ । ସେହି ପ୍ରତିମୂର୍ତ୍ତିର ଫଟହିଁ ଶ୍ରୀଧର ଶତପଥୀଙ୍କ ପୁସ୍ତକରେ ଶୋଭା ପାଉଛି ।

ମାଗୁଣି ଦାଶ ତାଙ୍କର 'କବିସମ୍ରାଟ ଉପେନ୍ଦ୍ର ଭଞ୍ଜ' ପୁସ୍ତକରେ କଳିଙ୍ଗଭାରତୀ ପାଖରେ ଥିବା ଆବକ୍ଷ ପ୍ରତିକୃତିର ଅନୁରୂପ ଫଟକୁ ସ୍ୱନୀତକରିଥିବା ବେଳେ ତାଙ୍କର ଅନ୍ୟପୁସ୍ତକ 'କିମ୍ବଦନ୍ତୀରେ ଭଞ୍ଜ' ପୁସ୍ତକରେ ଭଞ୍ଜନଗରର ଭଞ୍ଜ ସାହିତ୍ୟ ପରିଷଦ

ପାଖରେ ଥିବା ଆବକ୍ଷ ପ୍ରତିକୃତିର ଅନୁରୂପ ଫଟକୁ ସ୍ଥାନୀତ କରିଛନ୍ତି । ଉପରନ୍ତୁ ତାଙ୍କ ଦ୍ୱାରା ସଂପାଦିତ ଓ ପ୍ରକାଶିତ 'ଭଞ୍ଜ ସାହିତ୍ୟ ପରିକ୍ରମା' ପୁସ୍ତକରେ ଉପେନ୍ଦ୍ରଙ୍କର ଏକ ଭିନ୍ନ ପୂର୍ଣ୍ଣାବୟବ ପ୍ରତିକୃତି ମଧ୍ୟ ମୁଦ୍ରିତ ହୋଇଅଛି । (୧୬) (୧୭) (୧୮)

ଉପେନ୍ଦ୍ରଭଞ୍ଜଙ୍କ ପୂର୍ବ ସମୟରେ ଜୀବିତ ଥିବା ବହୁ ରାଜା ମହାରାଜାଙ୍କର ଭାରତୀୟ ଚିତ୍ରକର ମାନଙ୍କ ଦ୍ୱାରା ଅଙ୍କିତ ବହୁ ତୈଳଚିତ୍ର ଏବେବି ପୁରୁଣା ରାଜପ୍ରସାଦ ମାନଙ୍କରେ ଓ ମ୍ୟୁଜିୟମ ମାନଙ୍କରେ ଶୋଭା ପାଉଛି । ଏପରି ସ୍ଥଳେ ଘୁମୁସରରେ, ନୟାଗଡରେ, ବାଣପୁରରେ ଅଥବା ଅନ୍ୟ କୌଣସି ଗଡଜାତରେ ସେତେବେଳେ ବହୁଖ୍ୟାତି ଅର୍ଜନ କରିଥିବା ଉପେନ୍ଦ୍ରଭଞ୍ଜଙ୍କର ତୈଳଚିତ୍ରଟିଏ ନ ମିଳିପାରିବା ନିଶ୍ଚିତ ଭାବରେ ଦୁଃଖର ବିଷୟ ।

ମନରେ ପ୍ରଶ୍ନ ଆସୁଛି ଭଞ୍ଜଙ୍କୁ ଦେଖି ନଥିବା କୌଣସି ଅପଟୁ ହାତରେ ଚିତ୍ରକର ଦ୍ୱାରା ତାଳପତ୍ରରେ ଅଙ୍କିତ ଉପେନ୍ଦ୍ରଭଞ୍ଜଙ୍କ ରେଖାଚିତ୍ରକୁ ଉପେନ୍ଦ୍ରଭଞ୍ଜ ଭାବରେ ଗ୍ରହଣ କରିବା ସ୍ପୃହଣୀୟ କି ?

ପୁନଶ୍ଚ ଉପେନ୍ଦ୍ରଭଞ୍ଜଙ୍କ ଜେଜେବାପା ଧନଞ୍ଜୟ ଭଞ୍ଜ ଏବଂ କୃଷ୍ଣଭଞ୍ଜଙ୍କ ଜେଜେବାପାଙ୍କ ବାପା ଗୋବିନ୍ଦ ଭଞ୍ଜ ଦୁଇଭାଇ ଥିଲାବେଳେ, କୃଷ୍ଣଭଞ୍ଜଙ୍କ ପ୍ରତିମୂର୍ତ୍ତିର ସାଦୃଶ୍ୟ ବହନ କରୁଥିବା ଅନ୍ୟ ଏକ ପ୍ରତିମୂର୍ତ୍ତି ଗଢାଇ ତାହାକୁ ଉପେନ୍ଦ୍ରଭଞ୍ଜଙ୍କ ପ୍ରତିମୂର୍ତ୍ତି ଭାବରେ ଉପସ୍ଥାପନ କରିବା ଗ୍ରହଣୀୟ କି ?

ବିଭିନ୍ନ ଅନୁଷ୍ଠାନ ଦ୍ୱାରା ଓଡିଶାର ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହେଉଥିବା ଭଞ୍ଜଜୟନ୍ତୀରେ କେଉଁଠି କଳିଙ୍ଗଭାରତୀ- ଉପେନ୍ଦ୍ରଭଞ୍ଜ- ପ୍ରତିକୃତି ଅନୁରୂପ ଭଞ୍ଜ ଶୋଭା ପାଉଛନ୍ତି ତ ଅନ୍ୟ କେଉଁଠି ଭଞ୍ଜ ସାହିତ୍ୟ ପରିଷଦ-ଉପେନ୍ଦ୍ରଭଞ୍ଜ-ପ୍ରତିକୃତି ଅନୁରୂପ ଭଞ୍ଜ ଶୋଭା ପାଉଛନ୍ତି । ଏହାଦ୍ୱାରା ସତ୍ୟର ଅପଳାପ ହେବା ସଙ୍ଗେ ସଙ୍ଗେ ଆମର ଦାୟାଦ ମାନେ ବିଭ୍ରାନ୍ତ ହେଉନାହାନ୍ତି କି ?

**କିମ୍ବଦନ୍ତିରେ ଭଞ୍ଜ**

ଉପେନ୍ଦ୍ରଭଞ୍ଜଙ୍କ ଜୀବନୀ ସମ୍ବନ୍ଧରେ ତଥା ତାଙ୍କ କାବ୍ୟକୃତି ସମ୍ବନ୍ଧରେ ବହୁ କିମ୍ବଦନ୍ତି ଶୁଣାଯାଏ । ତନ୍ମଧ୍ୟରୁ ଅନେକ କିମ୍ବଦନ୍ତି ଶ୍ରୀଧର ଶତପଥୀ ତାଙ୍କ ରଚିତ 'ଭଞ୍ଜ ସଂନ୍ଦର୍ଭ' ଓ 'ଅମର ସନ୍ତାନ କବିସମ୍ରାଟ ଉପେନ୍ଦ୍ରଭଞ୍ଜ' ପୁସ୍ତକରେ ଲିପିବଦ୍ଧ କରିଛନ୍ତି ।

ସେହି କିମ୍ବଦନ୍ତି ମଧ୍ୟରୁ ଦୃଷ୍ଟାନ୍ତ ସ୍ୱରୂପ ମାତ୍ର ଦୁଇଟି କିମ୍ବଦନ୍ତିର ଏଠାରେ ଆଲୋଚନା ନିମନ୍ତେ ଉପସ୍ଥାପନା କରାଗଲା

(କ) ଉତ୍ତମ ସନ୍ତାନ ପ୍ରାପ୍ତି ଉଦ୍ଦେଶ୍ୟରେ ଧନଞ୍ଜୟ ଭଞ୍ଜ ଯଜ୍ଞ କରାଇଲେ ।

ସେହି ଯଜ୍ଞ ଚରୁ-ପାୟସ ସମସ୍ତ ଶ୍ରେଷ୍ଠ ରାଣୀମାନଙ୍କୁ ପ୍ରଦାନ କଲେ । ପ୍ରିୟତମା ରାଜନୀତି ନିପୁଣା ମଣ୍ଡା ଦେଈ ମଧ ତାହା ଭକ୍ଷଣ କଲେ । ଧନଞ୍ଜୟ ସ୍ୱପ୍ନରେ ଦେଖିଲେ, ଇଷ୍ଟଦେବୀ କହୁଛନ୍ତି-ବତ୍ସ ! ଏହି ରାଜ୍ୟର ପରିଚାଳନା ନିମନ୍ତେ ତୁମ୍ଭର ପୁତ୍ରମାନେ ଉପଯୁକ୍ତ ହେବେ ନାହିଁ । କେବଳ ମଣ୍ଡାଦେଈଙ୍କର ପୁତ୍ରର ଜ୍ୟେଷ୍ଠପୁତ୍ର ବହୁ କାବ୍ୟ ମହାକାବ୍ୟ ଲେଖି, ମାତୃଭାଷାର ଗୌରବ ବର୍ଦ୍ଧନ କରି, ଘୁମୁସର ରାଜ୍ୟର ଭଞ୍ଜ ବଂଶକୁ ଚିରକାଳ ଅମର କରି ରଖିବ । (୨)

ଏହି କିମ୍ବଦନ୍ତିର 'ମୂଳ' ରାମାୟଣରୁ ଅଣାଯାଇଥିବାର ସମ୍ଭାବନା ଅଧିକ ।

(ଖ) ଉପେନ୍ଦ୍ରଭଞ୍ଜଙ୍କ ପ୍ରଥମା ପତ୍ନୀ ନବଦୁର୍ଗ ରାଜଜେମା ବିଦ୍ୟାବତୀଙ୍କ ବିୟୋଗ ସମ୍ପର୍କରେ କିମ୍ବଦନ୍ତି ଅଛି । ଉପେନ୍ଦ୍ରଭଞ୍ଜ କେତେକ ସଙ୍ଗୀମାନଙ୍କ ଗହଣରେ ଜଙ୍ଗଲକୁ ଶିକାର କରିବାକୁ ଗଲେ । ସେଠାରେ ସଙ୍ଗୀମାନଙ୍କୁ କହିଲେ ଆଜି ମୋର ପତିବ୍ରତା ସ୍ତ୍ରୀର ପରୀକ୍ଷା ହେବ । ସମସ୍ତେ ଏକମତ ହେବା ହେତୁ ଜଣକୁ ସ୍ତ୍ରୀ ନିକଟକୁ ପଠାଇ କୁହାଗଲା, ଉପେନ୍ଦ୍ର ଭଞ୍ଜ ଶିକାର କରୁଥିବା ବେଳେ ଅହିରାଜ ସର୍ପର ସମ୍ମୁଖୀନ ହୋଇ ମୃତ୍ୟୁ ବରଣ କଲେ । ଏହା ବିଦ୍ୟାବତୀଙ୍କ କର୍ଣ୍ଣଗୋଚର ହେବାମାତ୍ରେ ବସିଥିବା ସ୍ଥାନରେ ପ୍ରାଣବାୟୁ ଉଡିଗଲା । ଏହା ନୂତନରେ ସଂଗୃହୀତ ଅପ୍ରକାଶିତ ଗୁମୁସର ଇତିହାସରୁ ଲେଖାଗଲା । ଅନ୍ୟ ମତ ଅନୁସାରେ ଶିକାର ବେଳେ ଉପେନ୍ଦ୍ରଭଞ୍ଜଙ୍କୁ ବାଘ ଖାଇଗଲା । ଏହାଶୁଣି ଉପେନ୍ଦ୍ରଭଞ୍ଜଙ୍କ ସ୍ତ୍ରୀ ଦଣ୍ଡାୟମାନ ଅବସ୍ଥାରେ ପ୍ରାଣତ୍ୟାଗ କରିଥିଲେ । (୨)

ମାଗୁଣି ଦାଶ ତାଙ୍କ 'କିମ୍ବଦନ୍ତୀରେ ଭଞ୍ଜ' ପୁସ୍ତକରେ ଅନୁରୂପ କିମ୍ବଦନ୍ତି ଉଲ୍ଲେଖ କରି ଲେଖିଛନ୍ତି, ଦିନେ ଉପେନ୍ଦ୍ରଭଞ୍ଜ ବାଣପୁର ରାଜଜେମାଙ୍କର ସ୍ନେହର ଗଭୀରତା କେତେ ମାପିବା ପାଇଁ ଏକ ଛଳନାର ଆଶ୍ରୟ ନେଇଥିଲେ । ମୃଗୟା କରିବା ପାଇଁ ଜଙ୍ଗଲରୁ ଯାଇ ସେଠାରେ ବାଘ ମୁହଁରେ ପଡି ପ୍ରାଣତ୍ୟାଗ କରିଥିବା ଖବର ରାଜନବରରେ ଚାକର୍ ମୁହଁରେ କୁହାଇଥିଲେ । ବାଣପୁର ରାଜଜେମା ଏହି ଖବର ଶୁଣୁ ଶୁଣୁ ମୂର୍ଚ୍ଛିତା ହୋଇପଡି ପ୍ରାଣତ୍ୟାଗ କରିଥିଲେ । (୧୭)

ଏ କିମ୍ବଦନ୍ତି ଯେ କେତେଦୂର ଭରସା ଯୋଗ୍ୟ ତାହା ଅନ୍ୟ ଏକ ଉଦାହରଣରୁ ସ୍ପଷ୍ଟ ହେବ । ଗୌରୀକୁମାର ବ୍ରହ୍ମାଙ୍କ ସମ୍ପାଦନାରେ ପ୍ରକାଶିତ ଅଭିମନ୍ୟୁ ଗ୍ରନ୍ଥାବଳୀରେ ଅଭିମନ୍ୟୁଙ୍କ ସମ୍ବନ୍ଧରେ ଉଲ୍ଲିଖିତ କିମ୍ବଦନ୍ତି ଅନୁସାରେ ଦିନେ ରସିକ କବି ନିଜ ପରିକଳ୍ପିତ କୌତୁକର ମନ୍ଦ ପରିମାଣ ବୁଝିବାକୁ ଅସମର୍ଥ ହୋଇ, ସନ୍ଧ୍ୟାବେଳେ ଗାଁ ଭଣ୍ଡାରି ହାତରେ ପତ୍ନୀଙ୍କ ନିକଟକୁ ସମ୍ବାଦ ପଠାଇଥିଲେ - ''ସାଆନ୍ତେ (କବି) ବଣକୁ ଯାଇଥିଲେ, ତାଙ୍କୁ

ବାଘ ଖାଇଗଲା'' । ଭଣ୍ଡାରିଠାରୁ ଏକଥା ଶୁଣିବାବେଳକୁ ସେ ଦୁଆର ମୁହଁକୁ ଆସି ଦୁଆରବନ୍ଧରେ ହାତଦେଇ ଠିଆ ହୋଇଥିଲେ । ଏହି ଖବର ଶୁଣିବା ସଙ୍ଗେ ସଙ୍ଗେ ତାଙ୍କର ପ୍ରାଣବାୟୁ ଉଡିଗଲା । (୧୯)

କିମ୍ବଦନ୍ତି ଜାତିର ମେରୁଦଣ୍ଡ ହୋଇନପାରେ । କିମ୍ବଦନ୍ତି ଦ୍ୱାରା ଆଲୋଚକ ମାନେ ଶ୍ରଦ୍ଧାରେ ନିଜ ଭାଷାର କବିମାନଙ୍କୁ ଅଧିକ ଗୌରବାନ୍ୱିତ କରିବାକୁ ଚେଷ୍ଟା କରିବାର ଦୃଷ୍ଟାନ୍ତ ଓଡିଆ ସାହିତ୍ୟରେ ବିରଳ ନୁହେଁ । କିନ୍ତୁ ସତ୍ୟାନ୍ୱେଷୀ ବିଜ୍ଞାନ ସମ୍ମତ ଗବେଷଣାରେ କିମ୍ବଦନ୍ତିର ସ୍ଥାନ ନାହିଁ ।

**ଭଞ୍ଜ କାବ୍ୟ**

ଉପେନ୍ଦ୍ରଭଞ୍ଜ ନିଜ ରଚିତ କାବ୍ୟରାଜି ସମ୍ବନ୍ଧରେ ତାଙ୍କର ଚିତ୍ରକାବ୍ୟ ବନ୍ଧୋଦୟ କାବ୍ୟରେ ସୂଚନା ଦେଇଛନ୍ତି -

ଏଣୁ ଏ କବି ବିଚାରଇ ଚିତ୍ତେ । କଲି ମୁଁ ଅନେକ ପ୍ରକାଶ ଗୀତେ ।
ଅଶେଷ ଚଉତିଶା ଚଉପଦୀ । ତାହା କେତେ ଯେ କହିବି ସମ୍ପାଦି ।
ଗାହା ଦୋହା ଷୋଡଶେନ୍ଦୁ ଛପୋଇ । ଇତ୍ୟାଦି କବିତ୍ୱ ଗଣନା ନାହିଁ ।
ରସ କୃଷ୍ଣ ବିଷୟ ଯେତେ ଗ୍ରନ୍ଥ । ଚିହ୍ନୋଇ ତହୁଁ କିଛି ଲେଖେଁ ଏଥ ।
ପୁରାଣ ଛାଇ କଳ୍ପନା ମାଧୁରୀ । ଚାରୁ ଚିତ୍ରଲେଖା ହେମ ମଞ୍ଜରୀ ।
ରସଲେଖା କାମକଳା ଚରିତ । ମନୋରମା ପ୍ରେମଲତା ସୁଗୀତ ।
ଭାବବତୀ ମୁକ୍ତାବତୀ ପ୍ରମାଣ । ବରଦଲୀଳା ଯେ ଛାନ୍ଦ ଭୂଷଣ ।
ଷଡ ଋତୁ କଳାକଉତୁକର । କ ନିୟମ ସାଦ୍ୟ ସୁଭଦ୍ରାସାର ।
ବୈଦେହୀଶ ବିଳାସ ସେହି ବାଦ୍ୟ । ପ୍ରସିଦ୍ଧ ଅବନା ଦ୍ୱାଦଶ ଛାନ୍ଦ ।
ରାମଲୀଳାମୃତ ଶେଷ ଚରିତ ।ପ୍ରେମସୁଧାନିଧି ଯମକେ ସ୍ରିତ ।
ରସିକ ହାରାବଳୀ ନାମେ ଗୀତ । କୁଞ୍ଜ ବିହାରାଦି ଶ୍ୟାମ ଚରିତ ।
ଅଳଙ୍କାର ରୀତି ରସ ପଞ୍ଚକ । ଲାବଣ୍ୟବତୀ ରସିକ ତୋଷକ ।
ପୁରୁଷୋତ୍ତମ ମାହାତ୍ମ୍ୟ ବଚନ । ନାନା କୋଶ ଶବ୍ଦେ ଗୀତାଭିଧାନ ।
ଛାନ୍ଦ କୋଟି ତାରା ଚନ୍ଦ୍ରମା ପରି । ଯା ନାମ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ।
ତ୍ରୈଲୋକ୍ୟ ମୋହିନୀ ଆଦିଯେ ଗୀତ । ନିର୍ମିତ ଛାନ୍ଦ ପୋଥି ପାଞ୍ଚ ସାତ ।
ସେ ଅର୍ଥ ପାର୍ଥିବ ମାର୍ଗେଣ ପୁଣ । ହୋଇଛି ଯେଣୁ କରି ବିତରଣ ।
ବାଲ୍ମୀକେ ମହାନାଟକ ପ୍ରକାରେ । ଦତ୍ତ ହେଲା ପ୍ରାୟ ହନୁମନ୍ତରେ ।

ସେ ଏଣୁ ଲେଖା ନୋହିଲା ଲେଖାରେ । ନଗ୍ରହିଁ ଦାନ ଧନ ଭୂଲେଖାରେ ।

ବିଭିନ୍ନ ଆଲୋଚକ ତଥା ଗବେଷକ ମାନେ ଭଞ୍ଜ କାବ୍ୟର ତାଲିକା ପ୍ରଦାନ କରିଛନ୍ତି । ତନ୍ମଧ୍ୟରୁ ହରେକୃଷ୍ଣ ମହତାବ, ବିଚ୍ଛନ୍ଦଚରଣ ପଟ୍ଟନାୟକ, ଶ୍ରୀଧର ଶତପଥୀ, ମାଗୁଣି ଦାଶଙ୍କ ଦ୍ୱାରା ପ୍ରକାଶିତ ତାଲିକା ନିମ୍ନରେ ପ୍ରଦତ୍ତ ହେଲା

ତାଲିକା ଅନୁଯାୟୀ ପ୍ରକାଶିତ-√
ତାଲିକା ଅନୁଯାୟୀ ଅପ୍ରକାଶିତ-X
ତାଲିକାଭୁକ୍ତ ନ ହୋଇଥିଲେ- –

| କ୍ର.ନ. | କାବ୍ୟର ନାମ | ହରେକୃଷ୍ଣ ମହତାବଙ୍କ ଦ୍ୱାରା ପ୍ରକାଶିତ | ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ ଦ୍ୱାରା ପ୍ରକାଶିତ | ଶ୍ରୀଧର ଶତପଥୀଙ୍କ ଦ୍ୱାରା ପ୍ରକାଶିତ | ମାଗୁଣୀ ଦାଶଙ୍କ ଦ୍ୱାରା ପ୍ରକାଶିତ |
|---|---|---|---|---|---|
| ୧ | ବୈଦେହୀଶ ବିଳାସ | √ | √ | | √ |
| ୨ | ପ୍ରେମ ସୁଧାନିଧି | √ | √ | | √ |
| ୩ | ଚୌପଦୀ ଭୂଷଣ | √ | √ | | √ |
| ୪ | ଚିତ୍ରକାବ୍ୟ ବନ୍ଧୋଦୟ | √ | √ | | √ |
| ୫ | ଚୌପଦୀ ଚନ୍ଦ୍ର | √ | √ | | √ |
| ୬ | ଯମକରାଜ ଚଉତିଶା | √ | √ | | √ |
| ୭ | ବଜାର ବୋଲି | √ | √ | | √ |
| ୮ | ଗୀତାଭିଧାନ | √ | √ | | √ |
| ୯ | କଳା କଉତୁକ | √ | √ | | √ |
| ୧୦ | ରସପଞ୍ଚକ | √ | √ | | √ |
| ୧୧ | ସଂଗୀତ ଉପେନ୍ଦ୍ର ଭଞ୍ଜ | √ | √ | – | √ |
| ୧୨ | ଦଶପୋଇ | √ | √ | – | √ |
| ୧୩ | କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ | √ | √ | | √ |
| ୧୪ | ରସିକହାରାବଳୀ | √ | √ | | √ |
| ୧୫ | ରସଲେଖା | √ | x | | √ |

| | | | | |
|---|---|---|---|---|
| ୧୬ ସୁବର୍ଣ୍ଣ ରେଖା | ✓ | ✓ | | ✓ |
| ୧୭ ଲାବଣ୍ୟବତୀ | ✓ | ✓ | | ✓ |
| ୧୮ ଚଉପହରା | ✓ | ✓ | – | ✓ |
| ୧୯ କେଳି ବାହୁଡା ଚଉତିଶା | ✓ | – | – | – |
| ୨୦ ଅବନା ରସ ତରଙ୍ଗ | ✓ | ✓ | | ✓ |
| ୨୧ ତ୍ରୈଲୋକ୍ୟ ମୋହିନୀ | X | X | | X |
| ୨୨ ସୁଭଦ୍ରା ପରିଣୟ | X | ✓ | | ✓ |
| ୨୩ କଟପାୟା | X | X | | X |
| ୨୪ ହାସ୍ୟାର୍ଣ୍ଣବ | X | X | | X |
| ୨୫ମୁକ୍ତାବତୀ | X | X | | X |
| ୨୬ବ୍ରହ୍ମଲୀଳା | X | X | | X |
| ୨୭ଚନ୍ଦ୍ରକଳା | X | X | | X |
| ୨୮ ସଙ୍ଗୀତ କୌମୁଦୀ | X | X | | X |
| ୨୯ ଶୋଭାବତୀ | X | X | | ✓ |
| ୩୦ କଳାବତୀ | X | X | | X |
| ୩୧ ରାମଲୀଳାମୃତ | X | ✓ | | ✓ |
| ୩୨ ରସମଞ୍ଜରୀ | X | X | – | X |
| ୩୩ବାରମାସୀ | X | X | – | X |
| ୩୪ ଇଚ୍ଛାବତୀ | X | X | – | X |
| ୩୫ ଦୁର୍ଗାସ୍ତୁତି | X | X | – | X |
| ୩୬ ଶ୍ରୀକୃଷ୍ଣ ବିହାର | X | X | | X |
| ୩୭ ଲତା | X | X | – | – |
| ୩୮ ଗଜ ନିସ୍ତାରଣ | X | X | – | X |
| ୩୯ କୁଞ୍ଜ ବିହାର | X | X | | X |
| ୪୦ ଗରୁଡ ଗୀତ | X | X | – | X |
| ୪୧ ଛାନ୍ଦ ଭୂଷଣ | X | ✓ | | ✓ |
| ୪୨ କଳା କଣ୍ଟକ | X | X | – | – |
| ୪୩ ହେମ ମଞ୍ଜରୀ | X | X | | X |
| ୪୪ ଚିତ୍ର ଲେଖା | X | X | | X |
| ୪୫ ପ୍ରେମ ଲତା | X | X | | X |
| ୪୬ ମନୋରମା | X | X | | X |
| ୪୭ ଷଡ଼ଋତୁ | X | X | | X |
| ୪୮ ରାହାସ ଲୀଳା | X | X | | X |
| ୪୯ କାମ କଳା | X | - | | X |

| | | | | |
|---|---|---|---|---|
| ୫୦ ପୁରୁଷୋତ୍ତମ ମାହାତ୍ମ୍ୟ | X | X | | X |
| ୫୧ ଶଶିରେଖା | X | X | | X |
| ୫୨ ଭାବବତୀ | X | ✓ | | ✓ |
| ୫୩ ଚନ୍ଦ୍ରରେଖା | X | - | | ✓ |
| ୫୪ ଛତିଶ ରାଗ | X | X | - | X |
| ୫୫ ପଞ୍ଚଶାୟକ | X | X | | - |
| ୫୬ ଛଅଗୋଇ | X | X | - | X |
| ୫୭ ନଅପୋଇ | X | X | - | X |
| ୫୮ ବାର ପୋ | X | X | - | X |
| ୫୯ ବିଚିତ୍ର ତରଙ୍ଗିଣୀ | X | X | - | X |
| ୬୦ ରଘୁନାଥ ବିଳାସ | X | - | - | - |
| ୬୧ ମଦନ ମଞ୍ଜରୀ | X | X | - | - |
| ୬୨ ତ୍ରିପୁରା ସୁନ୍ଦରୀ | X | - | - | - |
| ୬୩ ଅନଙ୍ଗ ରେଖା | X | X | - | - |
| ୬୪କଳ୍ପିତ କଳ୍ପଲେଖା | X | X | - | X |
| ୬୫ ରସନିଧି | - | X | - | - |
| ୬୬ ଚଉପଦୀ ଚନ୍ଦ୍ରିକା | - | X | - | - |
| ୬୭ ଶେଷ ଚରିତ | - | - | | - |
| ୬୮ ଶ୍ୟାମ ଚରିତ | - | - | | - |
| ୬୯ ରସିକାନୁଚିନ୍ତା | - | - | | - |
| ୭୦ ଲାବଣ୍ୟନିଧି | - | - | | ✓ |
| ୭୧ ନୀଳାଦ୍ରୀଶ ଚଉତିଶା | - | - | - | ✓ |
| ୭୨ ଷୋଳପୋଇ | - | X | - | ✓ |
| ୭୩ ନାରଦ ପୁରାଣ | - | - | - | X |
| ୭୪ ପଦ୍ମାବତୀ ପରିଣୟ | - | - | - | X |
| ୭୫ ଶବ୍ଦମାଳା ଅଭିଧାନ | - | - | - | X |
| ୭୬ ସତୀଶ ବିଳାସ | - | - | - | X |
| ୭୭ ଦମୟନ୍ତୀ ବିଳାସ | - | - | - | X |
| ୭୮ ବସନ୍ତ ରାସ | - | - | - | X |
| ୭୯ ରସପୋଇ | - | - | - | X |
| ୮୦ ରସବତୀ | - | - | - | X |
| ମୋଟ | ପ୍ରକାଶିତ-୨୦<br>ଅପ୍ରକାଶିତ-୪୫ | ପ୍ରକାଶିତ-୨୨<br>ଅପ୍ରକାଶିତ-୪୦ | | ପ୍ରକାଶିତ-୨୮<br>ଅପ୍ରକାଶିତ-୩୯ |
| | ୬୫ | ୬୨ | ୪୬ | ୬୭ |

ଉପରଲିଖିତ ତାଲିକା ଗୁଡିକ ହରେକୃଷ୍ଣ ମହତାବଙ୍କ ୧୯୪୮ରେ ପ୍ରକାଶିତ 'ଓଡିଶା ଇତିହାସ'ରେ, ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ ୧୯୫୧ ରେ ପ୍ରକାଶିତ କଳିଙ୍ଗ କବି ସମ୍ରାଟ 'କଳିଙ୍ଗ ଭାରତୀ'ପୁସ୍ତକରେ ଶ୍ରୀଧର ଶତପଥିଙ୍କ ୧୯୭୫ରେ ପ୍ରକାଶିତ 'ଭଞ୍ଜ ସନ୍ଦର୍ଭ'ରେ ଓ ମାଗୁଣି ଦାଶଙ୍କ ୧୯୮୯ରେ ପ୍ରକାଶିତ 'କବିସମ୍ରାଟ ଉପେନ୍ଦ୍ରଭଞ୍ଜ' ପୁସ୍ତକରେ ଦିଆଯାଇଛି । (୧୧) (୨୦) (୨) (୧୬)

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ହରେକୃଷ୍ଣ ମହତାବ ଲେଖିଛନ୍ତି ତାଲିକାଭୁକ୍ତ କାବ୍ୟଗୁଡିକ ଭଞ୍ଜ ସାହିତ୍ୟ ପରିଷଦ ସଂଗ୍ରହ କରିଛନ୍ତି । ଶ୍ରୀଧର ଶତପଥି ଯେ କି ଭଞ୍ଜ ସାହିତ୍ୟ ପରିଷଦର ସଭ୍ୟ, ସଂପାଦକ, ଉପସଭାପତି ଆଦି ପଦ ଅଳଙ୍କୃତ କରିଥିଲେ, ସେ ତାଙ୍କ ତାଲିକା ଦେଲାବେଳେ ଭଞ୍ଜଙ୍କ ଚିତ୍ର କାବ୍ୟ ବନ୍ଧୋଦୟ ଓ ଅପ୍ରକାଶିତ ଘୁମୁସର ଇତିହାସ ପୋଥିରୁ ସଂଗୃହୀତ ବୋଲି ଲେଖିଛନ୍ତି । ଶ୍ରୀଯୁକ୍ତ ଶତପଥୀ ଭଞ୍ଜ କାବ୍ୟର ପ୍ରକାଶିତ ଅପ୍ରକାଶିତ ତାଲିକା ଦେଇନାହାନ୍ତି । ମାଗୁଣି ଦାଶ ଲେଖିଛନ୍ତି ଅପ୍ରକାଶିତ ପୋଥି ତାଲିକାରୁ ଷୋଳପୋଇ, ନାରଦ ପୁରାଣ, ରସମଞ୍ଜରୀ, ଯୁଗଭଞ୍ଜ ନାମରେ ରଚିତ ବାରପୋଇ ଓ ତ୍ରୈଲୋକ୍ୟମୋହିନୀ ପୋଥିଗୁଡିକ ମିଳିଲାଣି । (୧୬)

ଉପରଲିଖିତ ଚାରୋଟି ତାଲିକା ପରସ୍ପର ସହିତ ମେଳ ଖାଉନାହିଁ । ଏଣୁ ମନରେ ସ୍ୱତଃ ପ୍ରଶ୍ନ ଉଠୁଛି -

(୧) ସତରେ କ'ଣ ତାଲିକାଭୁକ୍ତ ଅପ୍ରକାଶିତ ପୋଥିଗୁଡିକ ରହିଛି ?

(୨) ଯଦି ରହିଛି, ତେବେ ଭଞ୍ଜଙ୍କ ସମ୍ବନ୍ଧରେ ଜନମାନସରେ ଜାଣିବାକୁ ପ୍ରବଳ ଆଗ୍ରହ ଥିଲାବେଳେ ସେଗୁଡିକ ପ୍ରକାଶିତ ନ ହେବାର କାରଣ କ'ଣ ?

**ଭଞ୍ଜ କାବ୍ୟର ଆନୁପୂର୍ବିକତା**

ଏ ଯାବତ୍ ଭଞ୍ଜ କାହାପରେ କେଉଁ କାବ୍ୟ ରଚନା କରିଛନ୍ତି ତାହା ସଠିକ୍ ଭାବେ ନିର୍ଣ୍ଣିତ ହୋଇନାହିଁ ।

ଏ ଦିଗରେ ବିଭିନ୍ନ ଆଲୋଚକ ସେମାନଙ୍କ ମତ ଉପସ୍ଥାପନ କରିଥିଲେ ମଧ୍ୟ ତହିଁରେ ମତ ପାର୍ଥକ୍ୟ ରହୁଛି ।

ତେବେ ୧୯୯୧ରେ ପ୍ରକାଶିତ ମାଗୁଣି ଦାଶଙ୍କ 'ଭଞ୍ଜ ସାହିତ୍ୟ ପରିକ୍ରମା'ରେ ଡକ୍ଟର କିଶୋର ଚନ୍ଦ୍ର ମିଶ୍ର 'ଉପେନ୍ଦ୍ର ଭଞ୍ଜଙ୍କ କେତେକ ବିଶିଷ୍ଟ କୃତିର ଆନୁପୂର୍ବିକତା' ପ୍ରବନ୍ଧରେ ଅଳଙ୍କାର ସଂଯୋଜନକୁ ମୁଖ୍ୟ ଯୁକ୍ତି ରୂପେ ଗ୍ରହଣ କରି, ଖଳ ନିନ୍ଦା ଓ ସଜ୍ଜନ ପ୍ରଶଂସାରେ ନମ୍ରତାରୁ ଦାମ୍ଭିକତା, କାବ୍ୟାଦର୍ଶର ଉପସ୍ଥାପନା, ମଙ୍ଗଳାଚରଣରେ କବିଙ୍କ ଧର୍ମୀୟ

ଧାରଣା ଅର୍ନୈକ୍ୟରେ ଏକତା, କାବ୍ୟରେ ଅଳଙ୍କାର ନିର୍ଦ୍ଦେଶ, ଉପମାନର ସଂଯୋଜକ, ପ୍ରଯୁକ୍ତ ଉପମାନର ସଂଖ୍ୟା ଆଦିକୁ ସହାୟକ ଯୁକ୍ତି ଭାବରେ ଗ୍ରହଣ କରି ଭଞ୍ଜଙ୍କର ସାତ ଗୋଟି କାବ୍ୟର ଆନୁପୂର୍ବିକତା ସମ୍ବନ୍ଧରେ ନିଜ ମତବ୍ୟକ୍ତ କରିଛନ୍ତି । ତଦନୁସାରେ ରସଲେଖା, ରସିକ ହାରାବଳୀ, ପ୍ରେମ ସୁଧାନିଧି ପ୍ରାଥମିକ ସ୍ତରର ଏବଂ କ୍ରମ ପ୍ରୌଢତ୍ୱ ଲକ୍ଷ୍ୟ କରି ପରପର୍ଯ୍ୟାୟରେ ଯଥାକ୍ରମେ ସୁଭଦ୍ରା ପରିଣୟ, ଲାବଣ୍ୟବତୀ, ବୈଦେହୀଶ ବିଳାସ ଓ ଶେଷରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ରଚିତ ହୋଇଛି । (୧୮)

ଶ୍ରୀଧର ଶତପଥୀ ତାଙ୍କର 'ଭଞ୍ଜ ସନ୍ଦର୍ଭରେ ଭଞ୍ଜ କାବ୍ୟରେ ବ୍ୟବହାର କରାଯାଇଥିବା ଉପାଧିକୁ ଆଧାର କରି ବିଭିନ୍ନ କାବ୍ୟର ଆନୁପୂର୍ବିକତା ସ୍ଥିର କରିଛନ୍ତି । ପଞ୍ଚଶାୟକ ଗ୍ରନ୍ଥରେ ଉପେନ୍ଦ୍ର ନୃପତି, ରାଜା , ନୃପ ଶବ୍ଦ ବ୍ୟବହାର କରିଛନ୍ତି । ନୀଳକଣ୍ଠ ଭଞ୍ଜଙ୍କ ଅନ୍ତେ ସେ ରାଜପଦ ବ୍ୟବହାର କରିଥିବା ସମ୍ଭବ ଦୃଷ୍ଟିରୁ ଏହି କାବ୍ୟ ନୀଳକଣ୍ଠ ଭଞ୍ଜଙ୍କ ଅନ୍ତେ ଲିଖିତ । ସୁଭଦ୍ରା ପରିଣୟରେ ଭଞ୍ଜ ନୃପତି ଓ ବୀରବର ଦୁଇଟି ପଦ ବ୍ୟବହାର କରିଛନ୍ତି । ଏହି କାବ୍ୟ ଲେଖା ଶେଷ ବେଳକୁ ଉପେନ୍ଦ୍ର ଭଞ୍ଜ ରାଜା ହୋଇନଥିଲେ ମଧ ରାଜା ଶବ୍ଦ ବ୍ୟବହାର କରିବାର ଦୃଷ୍ଟାନ୍ତ ରହିଛି । ତେଣୁ ସୁଭଦ୍ରା ପରିଣୟ ନୀଳକଣ୍ଠଙ୍କ ମୃତ୍ୟୁ ପୂର୍ବର ଲେଖା । ଲାବଣ୍ୟନିଧି, ଚଉପଦୀ ଚନ୍ଦ୍ର କାବ୍ୟରେ ଉପେନ୍ଦ୍ର ବୀରବର ଶବ୍ଦ ବ୍ୟବହାର କରିଛନ୍ତି । ବିବାହ ପରେ ଉପେନ୍ଦ୍ରଙ୍କୁ ନୟାଗଡ ରାଜା ବୀରବର ଉପାଧି ପ୍ରଦାନ କରିଥିଲେ । ତେଣୁ ଏହି କାବ୍ୟଦ୍ୱୟ ବିବାହ ପରେ ଓ ଯୁବକ ସମୟରେ ରଚିତ । ଯମକରାଜ ଚଉତିଶା ଓ ଭାବବତୀ କାବ୍ୟରେ ଉପେନ୍ଦ୍ର ମଙ୍ଗରାଜ ପଦ ବ୍ୟବହାର କରିଛନ୍ତି । ପ୍ରଥମା ସ୍ତ୍ରୀଙ୍କ ବିୟୋଗ ପରେ ଉପେନ୍ଦ୍ର ବାଣପୁର ରାଜଜେମା ଭାରତୀଙ୍କୁ ଦ୍ୱିତୀୟା ପତ୍ନୀ ଭାବେ ଗ୍ରହଣ କରିଥିଲେ । ବାଣପୁର ରାଜା ଉପେନ୍ଦ୍ରଙ୍କୁ ମଙ୍ଗରାଜ ଉପାଧି ପ୍ରଦାନ କରିଥିଲେ । ତେଣୁ ଯମକ ରାଜ ଚଉତିଶା ଓ ଭାବବତୀ, ବାଣପୁର ବିବାହ ପରେ ରଚିତ । ଏ ଦୁଇଟି କାବ୍ୟ ଲାବଣ୍ୟନିଧି ଓ ଚଉପଦୀ ଚନ୍ଦ୍ରର ପରବର୍ତ୍ତୀ ରଚନା । ରସଲେଖା,ଅବନାରସ ତରଙ୍ଗ ଓ ଚିତ୍ରକାବ୍ୟ ବନ୍ଧୋଦୟରେ କବି କୌଣସି ଉପାଧି ବ୍ୟବହାର କରି ନଥିବାରୁ ଏହା ବୈରାଗ୍ୟ ଜନିତ କାରଣରୁ ହୋଇଥିବା ସମ୍ଭବ । ତେଣୁ ଏହି କାବ୍ୟ ଗୁଡିକ ଉପାଧି ବ୍ୟବହୃତ କାବ୍ୟ ରଚିତ ହେବାପରେ ଜୀବନର ଶେଷ ଆଡକୁ ଲେଖା ଯାଇଅଛି । ବୈଦେହୀଶ ବିଳାସ ତାଙ୍କର ଆଦ୍ୟ ଯୌବନର ଲେଖା । ଲାବଣ୍ୟବତୀରେ ବୀରବର ଉପାଧି ବ୍ୟବହୃତ ହୋଇଥିବାରୁ ଏହା ପ୍ରଥମା ପତ୍ନୀଙ୍କ ବିୟୋଗ ପରେ ଲିଖିତ । ଶେଷ ଜୀବନରେ ପୁରୀରେ ରହି ଜଗନ୍ନାଥଙ୍କୁ ଦର୍ଶନ କରି

ନିଜର କ୍ଷିତି ଓ ଖ୍ୟାତିକୁ ଭଗବାନଙ୍କ ନିକଟରେ ସମର୍ପଣ କରିଥିବା ନୀଳାଦ୍ରୀଶ ଚଉତିଶାରୁ ଜଣାଯାଏ । (୨)

ଯେଉଁ ଉପେନ୍ଦ୍ର ନିଜ ବଂଶ ବିଷୟରେ, ନିଜର ମନ୍ତ୍ର ସିଦ୍ଧି ବିଷୟରେ ନିଜ ଉପାଧି ବିଷୟରେ, ନିଜ ରଚିତ କାବ୍ୟ ବିଷୟରେ ଯଥେଷ୍ଟ ସୂଚନା ଦେଇଯାଇଛନ୍ତି ସେ ଯେ ଆନୁପୂର୍ବିକତା ବିଷୟରେ କୌଣସି ସୂଚନା ଦେଇନାହାନ୍ତି ଏହା ଭାବିବା ଠିକ୍ ହେବ ନାହିଁ । ଜଣେ ଲେଖକ ତା'ର ପୁସ୍ତକର ତାଲିକା ଦେଲାବେଳେ ପ୍ରାୟତଃ ରଚନା କ୍ରମରେ ସେଗୁଡିକ ଉଲ୍ଲେଖ କରିଥାଏ । ସେହି ଦୃଷ୍ଟିରୁ ଚିତ୍ରକାବ୍ୟ ବନ୍ଧୋଦୟରେ ଯେଉଁକ୍ରମରେ କାବ୍ୟଗୁଡିକ ଉଲ୍ଲେଖ କରାଯାଇଅଛି ତାହାର ଆନୁପୂର୍ବିକତା ସେହିଭଳି ମନେକରି ବିଭିନ୍ନ ଦିଗରୁ ଆଲୋଚନା କରି ସିଦ୍ଧାନ୍ତରେ ଉପନୀତ ହେଲେ ଭଲ ହୁଅନ୍ତା ।

**ଭଞ୍ଜ ସମ୍ବନ୍ଧୀୟ ଆଲୋଚନା ପୁସ୍ତକ**

ଉପେନ୍ଦ୍ରଭଞ୍ଜ ତଥା ତାଙ୍କ କାବ୍ୟ ସମ୍ବନ୍ଧରେ ୧୯୯୩ ମସିହା ପର୍ଯ୍ୟନ୍ତ ପ୍ରକାଶିତ ୬୪ ଗୋଟି ପୁସ୍ତକ ଓ ୨୦ ଗୋଟି ସ୍ମରଣୀକା ଗ୍ରନ୍ଥର ତାଲିକା 'ବହିତ୍ର'ର ବିଭିନ୍ନ ସଂଖ୍ୟାରେ ସ୍ଥାନୀତ କରାଯାଇଅଛି । ଏତଦ୍ ବ୍ୟତୀତ 'ବ୍ରହିତ୍ର' ଉପେନ୍ଦ୍ରଭଞ୍ଜଙ୍କ ବିଭିନ୍ନ କାବ୍ୟ ସମ୍ପର୍କରେ ଦଶଗୋଟି ଉପାଦେୟ ଆଲୋଚନା ଗ୍ରନ୍ଥ ପ୍ରକାଶ କରିଛନ୍ତି । (୨୧) ଯେଉଁମାନେ ଉପେନ୍ଦ୍ରଭଞ୍ଜଙ୍କ ଜୀବନୀ ସମ୍ବନ୍ଧରେ ତଥା ତାଙ୍କ କାବ୍ୟରାଜି ସମ୍ବନ୍ଧରେ ପୁସ୍ତକ ରଚନା କରିଛନ୍ତି ସେମାନଙ୍କ ମଧ୍ୟରେ ଶ୍ରୀଧର ଶତପଥୀ ଅନ୍ୟତମ । ଶ୍ରୀଧର ଶତପଥୀଙ୍କ ଦ୍ୱାରା ରଚିତ ପୁସ୍ତକ ସମ୍ପର୍କରେ ନିମ୍ନରେ ସୂଚନା ଦିଆଗଲା ।

ଶ୍ରୀଧର ଶତପଥୀଙ୍କ ଦ୍ୱାରା ରଚିତ 'ଅମର ସନ୍ତାନ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ' ୧୯୬୯ ମସିହାରେ ପ୍ରକାଶିତ । ଏ ବହିରେ ଶ୍ରୀଯୁକ୍ତ ଶତପଥୀ ଲେଖିଛନ୍ତି - ମୋତେ ଯେତେବେଳେ ୧୩ ବର୍ଷ ବୟସ ସେତେବେଳେ ମୋର ପିତାମହ ପ୍ରୌଢାବସ୍ଥାରେ ଭଞ୍ଜନଗରରେ ଥିବା ମହାଦେଇଙ୍କ ଘର ସହିତ ଜମି ସମ୍ପର୍କୀୟ କଳହରେ ବ୍ୟାପୃତ ଥିବାବେଳେ ଭଞ୍ଜବଂଶ ସମ୍ପର୍କରେ ବହୁକଥା ସଂଗ୍ରହ କରିଥିଲେ । ସେହି କଥା ସ୍ମରଣ ରଖି ଉପେନ୍ଦ୍ର ଭଞ୍ଜଙ୍କର ଜୀବନୀ ଲେଖିବାକୁ ଆରମ୍ଭ କଲି ! ଏ ପୁସ୍ତକରେ ଭଞ୍ଜଙ୍କର ଜୀବନୀ, ନୟାଗଡ ରାଜାଙ୍କଠାରୁ ବୀରବର ଉପାଧି, ରାଜା ମହାରାଜା ତଥା ପଣ୍ଡିତ ସମାଜର ଉପସ୍ଥିତିରେ ଗୁମୁସର ରାଜାଙ୍କଠାରୁ ବାରବେନି ବାଣୀବାର ବିଳାସିନୀ ଭୁଜଙ୍ଗ ଉପାଧି, ପରେ ସଙ୍ଗୀମାନଙ୍କ ସହ ରାଜ୍ୟ ଭ୍ରମଣ, ପ୍ରକୃତି, ରସ, ଅଳଙ୍କାର , ସଙ୍ଗୀତ ଇତ୍ୟାଦି ସ୍ଥାନ ପାଇଅଛି । (୪)

ଶ୍ରୀଧର ଶତପଥୀଙ୍କ ଦ୍ୱାରା ରଚିତ 'ଭଞ୍ଜ ସନ୍ଦର୍ଭ' ୧୯୭୪ ମସିହାରେ

ପ୍ରକାଶିତ । ଏ ପୁସ୍ତକରେ ଶ୍ରୀଧର ଶତପଥୀ ଲେଖିଛନ୍ତି - ପୁରପଲ୍ଲୀରୁ 'ଗୁମୁସର ଇତିହାସ' ୫ଖଣ୍ଡ ପୋଥି ପାଇଲି । ଅପ୍ରକାଶିତ ଏହି ଗୁମୁସର ଇତିହାସକୁ ମୂଳଭିତ୍ତି କରି ତଥା ପ୍ରଚଳିତ ଜନଶ୍ରୁତିକୁ ଆଶ୍ରୟ କରି ଭଞ୍ଜଙ୍କ ଜୀବନୀ ସମ୍ବନ୍ଧରେ ନାନା କଥାର ଅବତାରଣା କରିଛି । ଏ ପୁସ୍ତକରେ ୬ଟି ସନ୍ଦର୍ଭ ଅଛି । ପ୍ରଥମ 'ସନ୍ଦର୍ଭରେ ଭଞ୍ଜ ବଂଶର ଉତ୍ପତ୍ତିଠାରୁ ଆରମ୍ଭ କରି ଗୁମୁସର ରାଜ୍ୟର ନାମକରଣ , ଗୁମୁସର ନରପତି ମାନଙ୍କର ରାଜ୍ୟ ବିସ୍ତାର ସହିତ ରାଜ କବି ଧନଞ୍ଜୟ ଭଞ୍ଜଙ୍କ ପର୍ଯ୍ୟନ୍ତ ବିଚାର କରାଯାଇଅଛି । ଦ୍ୱିତୀୟ ସନ୍ଦର୍ଭରେ ଉପେନ୍ଦ୍ରଭଞ୍ଜଙ୍କର ଜାତକକୁ ବିଚାରକୁ ନେଇ ସେ କିପରି ବିଷ୍ଣୁଭକ୍ତ ଓ ଦେବୀଭକ୍ତ ହୋଇଥିଲେ, ତାହା ଜ୍ୟୋତିଃଶାସ୍ତ୍ରରୁ ପ୍ରମାଣ ଦିଆଯାଇଅଛି । ଜୀବନ କାଳ ମଧ୍ୟରେ ବିଦ୍ୟାଶିକ୍ଷା, ପ୍ରଥମ ବିବାହ, ଦ୍ୱିତୀୟ ବିବାହ, ଦେବୀମନ୍ତ୍ର ସିଦ୍ଧି , ରାମତାରକା ମନ୍ତ୍ର ସିଦ୍ଧି ଓ ସାକ୍ଷାତ ଦର୍ଶନ, ତିନିଜଣ ସାଧକଙ୍କ ସହ ରାଜ୍ୟ ଭ୍ରମଣ ବେଳେ ମୟୁରଭଞ୍ଜ, କେନ୍ଦୁଝର, ନବଦୁର୍ଗ, ବଉଦ, ବାଣପୁର ରାଜସଭାମାନଙ୍କରେ ପଣ୍ଡିତ ମାନଙ୍କ ସହିତ କାବ୍ୟ ଆଲୋଚନା ସମ୍ପର୍କରେ ଲେଖାଯାଇଅଛି । ଗୁମୁସର ରଜ୍ୟରେ ହୋଇଥିବା ପଣ୍ଡିତ ସଭାରେ ରାଜା ଓ ପଣ୍ଡିତ ମାନଙ୍କ ଉପସ୍ଥିତିରେ ସଂସ୍କୃତ ସାହିତ୍ୟ ଓ ଭଞ୍ଜ ସାହିତ୍ୟର ଆଲୋଚନା ବିଷୟ ଉଲ୍ଲେଖ କରାଯାଇଅଛି । ଶେଷ ଜୀବନରେ ପୁରୀ ଅବସ୍ଥାନ କାଳରେ ଭକ୍ତ କବି ଦୀନକୃଷ୍ଣ ଦାସଙ୍କ ସହିତ ସାକ୍ଷାତ ହେବା ବିଷୟ ଲେଖା ହୋଇଅଛି । ତୃତୀୟ ସନ୍ଦର୍ଭରେ ଭଞ୍ଜସାହିତ୍ୟ ଓ ସଂସ୍କୃତ ସାହିତ୍ୟର ତୁଳନାତ୍ମକ ବିଚାର, ଚତୁର୍ଥ ସନ୍ଦର୍ଭରେ ଶୃଙ୍ଗାରାଦି ୯ ରସର ବିଚାର, ପଞ୍ଚମ ସନ୍ଦର୍ଭରେ ଅଳଙ୍କାର ଏବଂ ଷଷ୍ଠ ସନ୍ଦର୍ଭରେ ଅଳଙ୍କାର ଏବଂ ଷଷ୍ଠ ସନ୍ଦର୍ଭରେ ସଙ୍ଗୀତ, ସାମାଜିକ,ଖଳ ଓ ପଣ୍ଡିତଙ୍କ ପ୍ରତି ନୀତି ବଚନ ଓ ଜଗନ୍ନାଥ ପ୍ରଶସ୍ତି କରାଯାଇ ଗ୍ରନ୍ଥ ସମାପ୍ତି କରାଯାଇଅଛି । (୨)

ଶ୍ରୀଧର ଶତପଥୀଙ୍କ ଦ୍ୱାରା ରଚିତ 'ଭଞ୍ଜ ସାହିତ୍ୟର ପ୍ରକୃତି ଚିତ୍ର' ରେ ଭଞ୍ଜ ସାହିତ୍ୟରେ ଥିବା ପ୍ରକୃତି ବର୍ଣ୍ଣନାର ବିଶଦ ଆଲୋଚନା କରାଯାଇଅଛି । ପ୍ରକୃତିର ବିବାହ ପ୍ରସଙ୍ଗ ଏହି ପୁସ୍ତକରେ ସ୍ୱତନ୍ତ୍ରତା । ଏହି ପୁସ୍ତକଟି ୧୯୮୧ ମସିହାରେ ପ୍ରକାଶିତ । (୨୨)

**ଭଞ୍ଜ କାବ୍ୟର ଟୀକା**

ପ୍ରାଚୀନ କବିମାନଙ୍କର କାବ୍ୟଗୁଡିକ କ୍ରମେ ବୋଧଗମ୍ୟ ନ ହେବାରୁ ତାହାର ଟୀକା କରିବା ଆବଶ୍ୟକ ପଡିଲା । ଗୋଟିଏ ଗୋଟିଏ କାବ୍ୟର ବିଭିନ୍ନ ପୋଥିକୁ ନେଇ ତାହାକୁ ମିଳାଇ ତହିଁର ଶୁଦ୍ଧ ସଂସ୍କରଣ କରିବା ଏବଂ ତଦ୍ ସହିତ ଟୀକା ଯୋଗ କରିବା ଅତ୍ୟନ୍ତ ଆୟାସ ସାଧ୍ୟ କାର୍ଯ୍ୟ ।

ଭଞ୍ଜଙ୍କର ପ୍ରାୟ ସମସ୍ତ ପ୍ରକାଶିତ କାବ୍ୟର ଟୀକା କରାଯାଇଅଛି । କୌଣସି କୌଣସି କାବ୍ୟର ଏକାଧିକ ଟୀକା ବିଶିଷ୍ଟ ଟୀକାକାର ମାନଙ୍କ ଦ୍ୱାରା କରାଯାଇଅଛି । ଯେଉଁ କେତେଜଣ ସାଧକ ତଥା ଗବେଷକ ଏ କାର୍ଯ୍ୟରେ ବ୍ରତୀ ହୋଇ ଅନେକ କାର୍ଯ୍ୟ କରିଛନ୍ତି ସେମାନଙ୍କ ମଧ୍ୟରେ ଶ୍ରୀଧର ଶତପଥୀଙ୍କ ନାମ ସ୍ମରଣ ଯୋଗ୍ୟ ।

ଶ୍ରୀଧର ଶତପଥୀ ଉପେନ୍ଦ୍ର ଭଞ୍ଜଙ୍କର ନିମ୍ନଲିଖିତ କାବ୍ୟଗଡିକର ଟୀକା କରିଛନ୍ତି ।

ଶ୍ରୀଧର ଶତପଥୀ ଉପେନ୍ଦ୍ରଭଞ୍ଜଙ୍କ ରଚିତ ଶୋଭାବତୀ କାବ୍ୟର ୧୬ ଗୋଟି ଛାନ୍ଦ ମଧ୍ୟରୁ ମାତ୍ର ୨ଟି ଛାନ୍ଦ ଗହଙ୍କୁର ମୋହନ ପଟ୍ଟନାୟକଙ୍କଠାରୁ ତାଳପତ୍ର ପୋଥି ଆକାରରେ ପାଇ ତାହାର ବିଶଦ ଟୀକା କରିଛନ୍ତି । ୧୯୬୧ ମସିହାରେ ଭଞ୍ଜ ସାହିତ୍ୟ ପରିଷଦର ଆର୍ଥିକ ସହାୟତାରେ ତାହା ପ୍ରକାଶିତ ହୋଇଅଛି । (୨୩ )

ଶ୍ରୀଧର ଶତପଥୀ ଉପେନ୍ଦ୍ର ଭଞ୍ଜଙ୍କ ରଚିତ ଚନ୍ଦ୍ରରେଖା କାବ୍ୟର ୧୮ଟି ଛାନ୍ଦ ମଧ୍ୟରୁ ୨ଟି ଛାନ୍ଦ ତାଳପତ୍ର ପୋଥି ଆକାରରେ ମୋହନ ପଟ୍ଟନାୟକଙ୍କଠାରୁ ପୋଥି ଆକାରରେ ପାଇ ତାହାର ଟୀକା କରିଛନ୍ତି । ୧୯୬୨ ମସିହାରେ ଭଞ୍ଜ ସାହିତ୍ୟ ପରିଷଦର ଆର୍ଥିକ ସହାୟତାରେ ତାହା ପ୍ରକାଶିତ ହୋଇଅଛି । (୨୪)

ଶ୍ରୀଧର ଶତପଥୀ ଉପେନ୍ଦ୍ରଭଞ୍ଜଙ୍କ ରଚିତ ଗୀତାଭିଧାନ କାବ୍ୟର ଟୀକା କରିଛନ୍ତି । ସେ ଲେଖିଛନ୍ତି ବଜାରରେ ଆଜିକାଲି ମିଳୁଥିବା ଗୀତାଭିଧାନ ଶେଷରେ ସିନା ଭଣିତି ଅଛି କିନ୍ତୁ ପ୍ରତି ଅକ୍ଷର ଶେଷରେ ଉପେନ୍ଦ୍ରଙ୍କର ଭଣିତି ନାହିଁ । ଏହା ଦେଖି ସନ୍ଦେହ ହେଉଥାଏ । କାରଣ ରୀତିଯୁଗର କବିଗଣ ତାଙ୍କ କାବ୍ୟମାନଙ୍କରେ ସର୍ଗ, ଅଧ୍ୟାୟ, ପ୍ରକାଶ , ତରଙ୍ଗ ମାନଙ୍କର ଶେଷରେ ଭଣିତି ଦେଇଥାଆନ୍ତି । ମାତ୍ର ପ୍ରକାଶିତ ଗୀତାଭିଧାନରେ ସେଭଳି ଭଣିତି ହେଉନଥିଲା । ଗୁମୁସର ଗଡ ନିକଟ ବିରିପୁର ଗ୍ରାମରେ ଥିବା ବରପଲ୍ଲୀ ପଞ୍ଚାୟତର ସରପଞ୍ଚ ଦେବରାଜ ପାତ୍ରଙ୍କ ନିକଟରୁ ଖଣ୍ଡିଏ ଗୀତାଭିଧାନ ପୋଥି ପାଇଲି । ପୋଥି ସହ ବହି ମିଳାଇ ଦେଖିଲି ଯେ ବହୁ ସ୍ଥାନରେ ପ୍ରଭେଦ ଅଛି ଏବଂ ପ୍ରତି ଅକ୍ଷର ଶେଷରେ ଭଣିତି ଅଛି । ଆଉ ଗୋଟିଏ ପୋଥି ମଧ୍ୟ ମିଳିଲା । ଦୁଇଟି ସମାନ ଥିବା ହେତୁ ପ୍ରକାଶ କରି ଲୋକଲୋଚନକୁ ଆଣିବା ଇଚ୍ଛା କରି ପୀୟୂଷ ଧାରା ଟୀକା କଲି । ୧୯୬୭ ମସିହାରେ ଟୀକାକାର ଶ୍ରୀଧର ଶତପଥୀଙ୍କ ଦ୍ୱାରା ଟୀକା ସହିତ ଉପେନ୍ଦ୍ର ଭଞ୍ଜଙ୍କ ଗୀତାଭିଧାନ ପ୍ରକାଶିତ ହୋଇଛି । (୨୫)

**ଅନୁଷ୍ଠାନ ମାଧ୍ୟମରେ ଭଞ୍ଜ ସାହିତ୍ୟର ପ୍ରସାର**

ଆଜିକାଲି ଓଡିଆମାନେ ଉପେନ୍ଦ୍ର ଭଞ୍ଜଙ୍କୁ ଜାତୀୟ ସୃଷ୍ଟିର ପ୍ରକୃତ ପ୍ରତିନିଧି

ଭାବରେ ଗ୍ରହଣ କରି ଯେ କୌଣସି ଅନୁଷ୍ଠାନ ଦ୍ୱାରା ଯେ କୌଣସି ଉତ୍ସବ କରିବାକୁ ମନସ୍ଥ କଲେ ପ୍ରଥମେ ଭଞ୍ଜ ଜୟନ୍ତି କରିବାକୁ ଚିନ୍ତା କରୁଛନ୍ତି । କିନ୍ତୁ ପଚାଶ ବର୍ଷ ତଳେ ଏଭଳି ଅବସ୍ଥା ନଥିଲା । ଓଡିଆ ମାନଙ୍କ ମଧ୍ୟରେ ଏ ବିପୁଳ ଉତ୍ସାହ ତଥା ଭଞ୍ଜଙ୍କ ପ୍ରତି ଶ୍ରଦ୍ଧା ଜନ୍ମାଇବାରେ ଦୁଇଟି ଅନୁଷ୍ଠାନ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି । ପ୍ରଥମଟି କଟକର କଳିଙ୍ଗ ଭାରତୀ ଅନୁଷ୍ଠାନ ଦ୍ୱିତୀୟଟି ଭଞ୍ଜନଗରର ଭଞ୍ଜସାହିତ୍ୟ ପରିଷଦ । ବିଗତ ପଚାଶ ବର୍ଷଧରି ଏହି ଦୁଇ ଅନୁଷ୍ଠାନ ନିରବଚ୍ଛିନ୍ନ ଭାବରେ ଭଞ୍ଜ ଜୟନ୍ତୀ, ଭଞ୍ଜ ସାହିତ୍ୟର ପାରାୟଣ, ବାଖ୍ୟା, ତାତ୍ତ୍ୱିକ ଆଲୋଚନା ସହିତ ଭଞ୍ଜକାବ୍ୟ ଲିଖିତ ପୋଥି ସଂଗ୍ରହ , ଅପ୍ରକାଶିତ ଭଞ୍ଜ କାବ୍ୟର ପ୍ରକାଶ, ଭଞ୍ଜ ସାହିତ୍ୟର ସଂରକ୍ଷଣ ତଥା ସଂପ୍ରସାରଣ କରିବାରେ ବ୍ରତୀ ହୋଇଛନ୍ତି ।

ଶ୍ରୀଧର ଶତପଥୀ ଭଞ୍ଜ ସାହିତ୍ୟ ପରିଷଦର ବିଭିନ୍ନ ସମୟରେ ସଭ୍ୟ, ସମ୍ପାଦକ ତଥା ଉପସଭାପତି ଥାଇ ଗାଁକୁ ଗାଁ ବୁଲି ବିଭିନ୍ନ ପୋଥି ସଂଗ୍ରହ କରି , ଓଡିଶାରେ ବିଭିନ୍ନ ସ୍ଥାନରେ ଭଞ୍ଜ ସାହିତ୍ୟ ସମ୍ବନ୍ଧରେ ଭାଷଣ ଦେଇ, ଭଞ୍ଜ ସାହିତ୍ୟ ପରିଷଦ ଦ୍ୱାରା ଅପ୍ରକାଶିତ କାବ୍ୟକୁ ପ୍ରକାଶିତ କରି, ନୂତନ ଟୀକା ସନ୍ନିବେଶିତ କାବ୍ୟକୁ ପରିଷଦ ମାଧ୍ୟମରେ ଛପାଇ ଭଞ୍ଜ ସାହିତ୍ୟକୁ ଲୋକଙ୍କ ପାଖରେ ପହଞ୍ଚାଇ ଜନପ୍ରିୟ କରାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି । ଶ୍ରୀଧର ଶତପଥୀ ଏ ସମସ୍ତ କାର୍ଯ୍ୟ ସମ୍ପର୍କରେ ତାଙ୍କ ରଚିତ 'କିଛି ସ୍ମୃତି କିଛି ଅନୁଭୂତି' ପୁସ୍ତକରେ ସୂଚନା ଦେଇଛନ୍ତି । (୨୬)

## ସତ୍ୟାନ୍ୱେଷୀ ଗବେଷକ ମାନଙ୍କ ପାଇଁ କେତୋଟି ପ୍ରସ୍ତାବ

ଭଞ୍ଜ ତଥା ଭଞ୍ଜ ରଚନାର ସ୍ୱଚ୍ଛତର ଚିତ୍ର ଆଙ୍କିବାକୁ ହେଲେ ଆମକୁ ଅନାବିଷ୍କୃତ ବହୁ ସତ୍ୟ ଆବିଷ୍କାର କରିବାକୁ ପଡିବ । ସେଥି ନିମନ୍ତେ ନିମ୍ନଲିଖିତ ପ୍ରସ୍ତାବ ଗୁଡିକ ବିଚାର କରାଯାଉ ।

୧. କିମ୍ବଦନ୍ତିକୁ ବାଦ ଦିଆଯାଉ ।

୨. ତାଲିକାରେ ଉଲ୍ଲେଖ କରାଯାଇଥିବା ଅପ୍ରକାଶିତ ପୋଥିଗୁଡିକୁ ଅଚିରେ ପ୍ରକାଶ କରାଯାଉ ।

୩. ଭଞ୍ଜ ଆଲୋଚକମାନେ ଉଲ୍ଲେଖ କରୁଥିବା ପୋଥି ଗୁଡିକରେ ବ୍ୟବହୃତ ହୋଇଥିବା ତାଳପତ୍ରର ସମୟ ବିଜ୍ଞାନାଗାରରେ ପରୀକ୍ଷା କରି ଓଡିଶାରେ କାଗଜ ପ୍ରଚଳିତ ହେବାପରେ ତଥା ମୁଦ୍ରଣ ଯନ୍ତ୍ର କାମ କଲାପରେ ତାଳପତ୍ରରେ ଲେଖାଯାଇଥିବା

ପୋଥିଗୁଡିକୁ ଉଦ୍ଦେଶ୍ୟ ପ୍ରଣୋଦିତ ମନେକରି ବାଦ ଦିଆଯାଉ ।

୪. ପ୍ରତିଟି କାବ୍ୟର ଏକାଧିକ ପୋଥିକୁ ତୁଳନା କରି ପ୍ରକ୍ଷିପ୍ତ ଅଂଶ ଗୁଡିକ ବାଦ ଦିଆଯାଉ ।

୫. ଅବଶିଷ୍ଟ ଯେତୋଟି କାବ୍ୟ ରହୁଛି ତା'କୁ କେବଳ ଭଣତି ଦୃଷ୍ଟିରୁ ଭଞ୍ଜଙ୍କର ବୋଲି ବିଚାର ନ କରି ଆଲୋଚକ ବୃନ୍ଦଙ୍କର ସମ୍ମିଳିତ ଆଲୋଚନା ପରେ ଭାଷା, ଭାବ ଓ ଅନ୍ତଃସ୍ୱର ଦୃଷ୍ଟିରୁ କେଉଁଗଡିକ ଉପେନ୍ଦ୍ରଙ୍କ ରଚନା ତାହା ସ୍ଥିର କରାଯାଉ ।

୬. ଘୁମୁସର ଇତିହାସ ସମ୍ବଳିତ ପୋଥିଗୁହିକୁ ତର୍ଜମା କରି ତହିଁରୁ ବିଭିନ୍ନ ପୋଥିରେ ସାମଞ୍ଜସ୍ୟ ଥିବା ଇତିହାସକୁ ଗ୍ରହଣ କରାଯାଉ । ଏହି ଇତିହାସରେ ଉପେନ୍ଦ୍ରଙ୍କ ଜୀବନୀ ସମ୍ବନ୍ଧରେ ଯେତିକି କଥା ଲିଖିତ ଅଛି କେବଳ ତାକୁହିଁ ଗ୍ରହଣ କରାଯାଉ ।

୭. କବିଙ୍କ ଅନୁଭବ କବିତାରେ ପରିସ୍ଫୁଟିତ ହେଉଥିବାରୁ କବିଙ୍କ ଜୀବନର ବିଭିନ୍ନ ଘଟଣାକୁ କ୍ରମରେ ରଖି ତା'ର ପ୍ରତିଫଳନକୁ କାବ୍ୟରେ ଆବିଷ୍କାର କରି ତଥା ଭାଷା, ଭାବ, ଅଳଙ୍କାର ଇତ୍ୟାଦିର ପରିପକ୍ୱତାକୁ ଆଖିରେ ରଖି ଆଲୋଚକ ମାନଙ୍କର ସମ୍ମିଳିତ ଆଲୋଚନା ମାଧମରେ କାବ୍ୟଗୁହିକର ଆନୁପୂର୍ବିକତା ସ୍ଥିର କରାଯାଉ ।

## ଉପସଂହାର

ଏ କଥା ସତ୍ୟଯେ ନିର୍ଦ୍ଦିଷ୍ଟ ଭାବରେ ଉପେନ୍ଦ୍ର ଭଞ୍ଜ କେବେ ଜନ୍ମ ହୋଇଥିଲେ , କେତେଦିନ ବଞ୍ଚିଥିଲେ, କେତେଖଣ୍ଡ କାବ୍ୟ ଲେଖିଥିଲେ, କାହା ପରେ କେଉଁ କାବ୍ୟ ଲେଖାଇଥିଲେ, କେବେ ତାଙ୍କର ଦେହାନ୍ତ ହୋଇଥିଲା ଇତ୍ୟାଦି ଏ ଯାବତ୍ ଜଣାଯାଇନାହିଁ । ନାନା କିମ୍ବଦନ୍ତିର କୁହେଳିକା ଭିତରେ, ଜନଶ୍ରୁତିର ମିଥ୍ୟାଶ୍ରୟ ଭିତରେ, ଅନୁମାନର ଶୂନ୍ୟତା ଭିତରେ ଭଞ୍ଜ ଅସ୍ପଷ୍ଟ ।

ଏ ଉକ୍ତି ଯେଭଳି ସତ୍ୟ ତତୋଧିକ ସତ୍ୟ ହେଉଛି ହଂସ ପାଣି ମିଶା ଦୁଧରୁ ପାଣି ଛାଣି ପିଇଲାଭଳି ଅନେକ ଗବେଷକ କିମ୍ବଦନ୍ତିରୁ ମିଛକୁ ଆଡେଇ ଦେଇ ସତ୍ୟ ଆବିଷ୍କାର କରିବାକୁ ବହୁ ପ୍ରଚେଷ୍ଟା କରି ଆସୁଛନ୍ତି ।

ଏ ଜାତୀୟ କର୍ତ୍ତବ୍ୟ ସମ୍ପାଦନରେ, ଭଞ୍ଜଙ୍କୁ ଚିହ୍ନି ଚିହ୍ନେଇବାରେ ଯେଉଁମାନେ ମହନୀୟ ତଥା ଆୟାସ ସାଧ ପ୍ରଚେଷ୍ଟା କରିଛନ୍ତି ସେମାନଙ୍କ ମଧରେ ଶ୍ରୀଧର ଶତପଥୀ ଅନ୍ୟତମ । ସେଥିପାଇଁ ତାଙ୍କୁ ଯଥାର୍ଥରେ ୧୯୬୨ ମସିହାରେ ତତ୍କାଳୀନ ଶିକ୍ଷାମନ୍ତ୍ରୀ

ପବିତ୍ର ମୋହନ ପ୍ରଧାନଙ୍କ ଦ୍ୱାରା 'ଭଞ୍ଜ ସାହିତ୍ୟ ବିଶାରଦ' ଓ ୧୯୯୩ ମସିହାରେ ଗୌରୀକୁମାର ବ୍ରହ୍ମାଙ୍କ ଦ୍ୱାରା 'ଭଞ୍ଜଶ୍ରୀ ' ଉପାଧିରେ ଭୂଷିତ କରାଯାଇଅଛି । ଶ୍ରୀଧର ଶତପଥୀଙ୍କୁ ଏ ଜାତି ଅବଶ୍ୟ ମନେରଖିବ ।  (୫ ମାର୍ଚ୍ଚ ୧୯୯୯)

## ସହାୟକ ଗ୍ରନ୍ଥ ସୂଚୀ


୧. ଭଞ୍ଜପ୍ରଭା -------------- ସମ୍ପାଦକ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ।

୨. ଭଞ୍ଜ ସନ୍ଦର୍ଭ ------------- ଶ୍ରୀ ଶ୍ରୀଧର ଶତପଥୀ ।

୩. ଭଞ୍ଜ ବଂଶାବଳୀ----------- ସମ୍ପାଦକ ଶ୍ରୀ ମାଗୁଣି ଦାଶ ।

୪. ଭଞ୍ଜ ଭଞ୍ଜଜୟନ୍ତୀ ଓ
ଓଡିଶାର ସାଂସ୍କୃତିକ ଇତିହାସ --- ସମ୍ପାଦକ ରଜତ କୁମାର କର ।

୫. ଅମର ସନ୍ତାନ କବି ସମ୍ରାଟ
ଉପେନ୍ଦ୍ର ଭଞ୍ଜ------------ ପଣ୍ଡିତ ଶ୍ରୀଧର ଶ୍ରୀଧର ଶତପଥୀ ।

୬. କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ----- ଅନନ୍ତ ପଦ୍ମନାଭ ପଟ୍ଟନାୟକ ।

୭. ଉପେନ୍ଦ୍ର ଭଞ୍ଜ ଜୀବନୀ --------- ଦାମୋଦର ଦାସ ।

୮. ଲାବଣ୍ୟବତୀ ମୁଖବନ୍ଧ --------- ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ।

୯. ଭଞ୍ଜ ଭୂମିକା --------------- ଗୌରୀକୁମାର ବ୍ରହ୍ମା ।

୧୦. ଉତ୍କଳ ସାହିତ୍ୟ ଇତିହାସ ------ ତାରିଣୀ ଚରଣ ରଥ ।

୧୧. ଓଡିଶା ଇତିହାସ ----------- ଶ୍ରୀ ହରେକୃଷ୍ଣ ମହତାବ ।

୧୨. ଓଡିଆ ସାହିତ୍ୟର ଇତିହାସ --- ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ।

୧୩. ଓଡିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ - ଅଧ୍ୟାପକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ

୧୪. ଶ୍ରୀ ନିଳାଦ୍ରୀଶ ଚଉତିଶା --------- ସମ୍ପାଦକ ପଣ୍ଡିତ ଶ୍ରୀ ସଦାଶିବ ରଥଶର୍ମା ।

୧୫. ଭଞ୍ଜ ମୟୂଖ----------------- ସମ୍ପାଦକ ଡାକ୍ତର ଶୈଳାଶ୍ୱର ନନ୍ଦ । ଅଧ୍ୟାପକ ସୁଧୀର ଚନ୍ଦ୍ର ମହାନ୍ତି ।

୧୬. କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ---------- ଶ୍ରୀ ମାଗୁଣୀ ଦାଶ ।

୧୭. କିମ୍ବଦନ୍ତୀରେ ଭଞ୍ଜ ---------------- ମାଗୁଣି ଦାଶ ।

୧୮. ଭଞ୍ଜ ସାହିତ୍ୟ ପରିକ୍ରମା ------------- ସମ୍ପାଦକ ଶ୍ରୀ ମାଗୁଣି ଦାଶ ।

୧୯. ଅଭିମନ୍ୟୁ ଗ୍ରନ୍ଥାବଳୀ (ପ୍ରଥମାର୍ଦ୍ଧ) ------- ସମ୍ପାଦକ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ।

୨୦. କଳିଙ୍ଗ କବିସମ୍ରାଟ କଳିଙ୍ଗଭାରତୀ -------- ବିଚ୍ଛନ୍ଦ ଚରଣ ପଟ୍ଟନାୟକ

୨୧. ବହିତ୍ର-୧ ରୁ ବହିତ୍ର- ୧୦-------------- ସମ୍ପାଦକ ନିଶାକର ପାଢୀ।

୨୨. ଭଞ୍ଜ ସାହିତ୍ୟର ପ୍ରକୃତି ଚିତ୍ର ------------ ପଣ୍ଡିତ ଶ୍ରୀ ଶ୍ରୀଧର ଶତପଥୀ ।

୨୩. ଶୋଭାବତୀ (ସଟୀକ) --------------- ଟୀକାକାର ଶ୍ରୀ ଶ୍ରୀଧର ଶତପଥୀ ।

୨୪. ଚନ୍ଦ୍ରରେଖା (ସଟୀକ) ---------------- ଟୀକାକାର ଶ୍ରୀ ଶ୍ରୀଧର ଶତପଥୀ ।

୨୫. ଗୀତାଭିଧାନ (ସଟୀକ) -------------- ଟୀକାକାର ଶ୍ରୀ ଶ୍ରୀଧର ଶତପଥୀ ।

୨୬. କିଛି ସ୍ମୃତି କିଛି ଅନୁଭୂତି ------------- ଭଞ୍ଜଶ୍ରୀ ପଣ୍ଡିତ ଶ୍ରୀଧର ଶତପଥୀ ।

କ୍ୱାଟର୍ସ ନମ୍ବର - ସି -୬୬
ୟୁନିଟ- ଆଠ
ଭୂବନେଶ୍ୱର - ୭୫୧୦୧୨

*****

# ମୁଁ ତାଙ୍କୁ ଯେପରି ଜାଣେ

ଶ୍ରୀମାଗୁଣି ଦାଶ

ଭଞ୍ଜଭୂମି ଘୁମୁସରର ପବିତ୍ରମାଟିରେ ଜନ୍ମଲାଭ କରେ ତାର ପାଣି ପବନରେ ବଢି ଯେଉଁ କେତେଜଣ କୃତ ବିଦ୍ୟ ବ୍ୟକ୍ତି ମହାକବି ଉପେନ୍ଦ୍ରଭଞ୍ଜଙ୍କ ପ୍ରତିଭାରେ ପ୍ରଭାବିତ ହୋଇ ନିଜ ପ୍ରତିଭା ବିକାଶରେ ନିଜକୁ ଧନ୍ୟକରି ଅଛନ୍ତି, ସେମାନଙ୍କ ମଧ୍ୟରେ ପଣ୍ଡିତ ଶ୍ରୀଧର ଶତପଥୀ ଅନ୍ୟତମ । ସେ ଘୁମୁସରର ତତ୍କାଳୀନ ରାଜା ଲକ୍ଷ୍ମଣଭଞ୍ଜଙ୍କ ଦ୍ୱାରା ପୁରୁଣା ଘୁମୁସର ଗଡରେ ପ୍ରତିଷ୍ଠିତ ପ୍ରଭୁବାସୁଦେବଙ୍କ ନାମରେ ନାମିତ ଗଡ ନିକଟରେ ବାସୁଦେବପୁର ନାମରେ ଯେଉଁ ବ୍ରାହ୍ମଣ ଶାସନଟି ପ୍ରତିଷ୍ଠା କରିଥିଲେ, ପଣ୍ଡିତ ଶ୍ରୀଧର ଶତପଥୀ ସେହି ଶାସନରେ ୧୯୧୪ ମସିହା ସେପ୍ଟେମ୍ବର ମାସ ୧୫ ତାରିଖ ପବିତ୍ର ଆଶ୍ୱିନ କୃଷ୍ଣ ଏକାଦଶୀ ତିଥିରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଜନାର୍ଦ୍ଦନ ଶତପଥୀ ଏବଂ ମାତାଙ୍କ ନାମ ରାସମଣୀ ଦେବୀ ।

ଶ୍ରୀଧର ଶତପଥୀ ଗ୍ରାମ ପାଠଶାଳାରେ ପ୍ରାଥମିକ ଶିକ୍ଷା ଶେଷକରିବାପରେ ସେତେବେଳେ ନିଜଗ୍ରାମରେ ନୂତନରେ ପ୍ରତିଷ୍ଠିତ ସଂସ୍କୃତ ଟୋଲରେ ସଂସ୍କୃତ ଶିକ୍ଷାଲାଭ କରିଥିଲେ । ସେଠାରୁ କୃତିତ୍ୱର ସହିତ ପାସକରି ସଂସ୍କୃତ ଶାସ୍ତ୍ରରେ ଅଧିକ ଜ୍ଞାନ ଲାଭ କରିବା ପାଇଁ ପାରଳାଖେମଣ୍ଡି ଯାଇ ସେଠାରୁ ଅଧ୍ୟୟନ କରିଥିଲେ । ସେଠାରେ ସେ କର୍ମକାଣ୍ଡ ଓ ଜ୍ୟୋତିଷ ଶାସ୍ତ୍ରରେ ଜ୍ଞାନଲାଭ କରି ୧୯୩୪ ମସିହାରେ ସ୍ୱଗ୍ରାମକୁ ଫେରି ଆସିଥିଲେ । ସେ ଗ୍ରାମରେ ରହି ପୂଜାପାଠ,କର୍ମ କର୍ମାଣି ଓ ଜ୍ୟୋତିଷ ବିଦ୍ୟା ଯୋଗୁଁ ଆଖ ପାଖ ଗ୍ରାମର ଗ୍ରାମବାସୀଙ୍କମଧ୍ୟରେ ବେଶ୍ ଲୋକପ୍ରିୟ ହୋଇପାରିଥିଲେ । ଜ୍ୟୋତିଷ ଶାସ୍ତ୍ରରେ ତାଙ୍କର ଗଣନା ଅବ୍ୟର୍ଥ ଥିଲା । ସେଥିପାଇଁ ସେ ବିଭିନ୍ନ ସ୍ଥାନରୁ ଡାକରା ପାଇ ସେଠାକୁ ଯାଉଥିଲେ ଏବଂ ନିଜର କୃତିତ୍ୱ ପ୍ରଦର୍ଶନ କରୁଥିଲେ । କେଉଁଠି ଦେଉଳ ପ୍ରତିଷ୍ଠା ହେବ, କେଉଁଠି ମନ୍ଦିର ପ୍ରତିଷ୍ଠା ହେବ, କେଉଁଠି ପୁଷ୍କରିଣୀ ଓ କେଉଁଠି ଗୃହ ପ୍ରତିଷ୍ଠା ହେବ ପଣ୍ଡିତେ ସେଠାରେ ଉପସ୍ଥିତ ନହେଲେ ସେ କାର୍ଯ୍ୟ ଅପୂର୍ଣ୍ଣ ରହିଯାଏ । ଲୋକେ ପ୍ରତ୍ୟେକ ଶୁଭ କାର୍ଯ୍ୟରେ ତାଙ୍କର ଉପସ୍ଥିତି ଚାହୁଁଥିଲେ । ସେ ଉପସ୍ଥିତ ହୋଇ ସଂସ୍କୃତ ଶ୍ଳୋକଟିଏ ବୋଲି କର୍ତ୍ତାଙ୍କ ହାତରେ କୁଶ ବଟୁଟିଏ ପିନ୍ଧାଇ ଦେଲେ କାମଟି ସର୍ବଶୁଭରେ ହେବ ବୋଲି ଲୋକଙ୍କ ମଧ୍ୟରେ ଧାରଣା ହେଉଥିଲା ।

ଖାଲି ସେତିକି ନୁହେଁ କର୍ମ କର୍ମାଣୀ ଓ ଜ୍ୟୋତିଷ କାର୍ଯ୍ୟଛଡା ତାଙ୍କର

ସାନିଧ୍ୟଲାଭ କରିବା ପାଇଁ ଏବଂ ତାଙ୍କ ସହିତ ବିଭିନ୍ନ ବିଷୟରେ ଆଳାପ ଆଲୋଚନା କରିବାପାଇଁ ଲୋକେ ଆଗ୍ରହ ପ୍ରକାଶ କରୁଥିଲେ । ସେ ବିଭିନ୍ନ ବିଷୟରେ ଲୋକଙ୍କୁ କହି ଲୋକଙ୍କ ମନ କିଣି ନେଉଥିଲେ । ସତେ ଯେପରି ସେ ଥିଲେ ଜ୍ଞାନର ଭଣ୍ଡାର ।

୧୯୪୫ ମସିହାରେ ଗୋବରାର ସ୍ୱନାମଧନ୍ୟ ସ୍ୱାଧିନତା ସଂଗ୍ରାମୀ ବାଞ୍ଛାନିଧି ପଟ୍ଟନାୟକଙ୍କର ଜ୍ୟେଷ୍ଠା କନ୍ୟାର ବିବାହ ତନରଡା ଗୋଶଲାଠାରେ ଅନୁଷ୍ଠିତ ହୋଇଥିଲା । ସେଥିରେ କଟକରୁ ବିଶିଷ୍ଟ ସାହିତ୍ୟିକ ଅନନ୍ତ ପ୍ରସାଦ ପଣ୍ଡା, ବାଳକୃଷ୍ଣ କର, ଶଶିଭୂଷଣ ରାୟ, ଲକ୍ଷ୍ମୀନାରାୟଣ ସାହୁ ପ୍ରଭୃତି ଯୋଗ ଦେଇଥିଲେ । ଏପରି ଏକ ସମାବେଶରେ ଅନନ୍ତ ପ୍ରସାଦ ପଣ୍ଡା ଘୁମୁସରରେ ଗୋଟିଏ ସାହିତ୍ୟିକ ଅନୁଷ୍ଠାନ ଗଢ଼ିବାପାଇଁ ପ୍ରସ୍ତାବ କରି ଥିଲେ । ତାଙ୍କ ପ୍ରସ୍ତାବ କ୍ରମେ ସେମାନଙ୍କ ଉପସ୍ଥିତିରେ "ଭଞ୍ଜ ସାହିତ୍ୟ ପରିଷଦ" ନାମରେ ଗୋଟିଏ ଅନୁଷ୍ଠାନ ଗଠନ କରାଗଲା । ଅନୁଷ୍ଠାନର ସଂପାଦକ ଦାୟିତ୍ୱ ଅଚାନକ ଭାବରେ ପଢ଼ାଳର ହରିହର ସ୍ୱାଇଁ ଓ ମୋ ଉପରେ ନ୍ୟସ୍ତ କରାଯାଇଥିଲା । ପଣ୍ଡିତ ଶତପଥୀ ମହାଶୟ ସେହି ବିବାହ ଉତ୍ସବରେ ସେଠାରେ ଉପସ୍ଥିତ ଥିଲେ ।

କିଛିଦିନପରେ ଭଞ୍ଜ ସାହିତ୍ୟ ପରିଷଦ ପାଇଁ ବିଧିବଦ୍ଧ ଭାବରେ ଗୋଟିଏ କମିଟି ଗଠନ କରାଯାଇଥିଲା । ସାହିତ୍ୟିକ ଶ୍ରୀକଣ୍ଠ ଶତପଥୀ ତାର ସଭାପତି ନିର୍ବାଚିତ ହୋଇଥିଲେ । ହରିହର ସ୍ୱାଇଁ ପରିଷଦ ପାଇଁ ଗୋଟିଏ ସଂବିଧାନ ପ୍ରଣୟନ କରିଥିଲେ । ତାହା ପରିଷଦ ସଭାରେ ଗୃହିତ ହୋଇଥିଲା ସେହି ସଂବିଧାନରେ ରସଲକେଣ୍ଡାର ନାମ ପରିବର୍ତ୍ତନ କରି ଭଞ୍ଜନଗର କରାଯିବା ପାଇଁ ପ୍ରଥମ ଉଦ୍ଦେଶ୍ୟ ରଖାଯାଇଥିଲା । ତାଛଡା ଉପେନ୍ଦ୍ରଭଞ୍ଜଙ୍କର ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି ସ୍ଥାପନ, ଭଞ୍ଜସ୍ମୃତି ମନ୍ଦିର ସ୍ଥାପନ, ଉପେନ୍ଦ୍ରଭଞ୍ଜଙ୍କ ନାମରେ ଗୋଟିଏ ମହାବିଦ୍ୟାଳୟ ପ୍ରତିଷ୍ଠା, ଗାଁ ଗହଳରୁ ତାଳପତ୍ର ପୋଥି ସଂଗ୍ରହ କରି ସେଥିରୁ ଉପେନ୍ଦ୍ରଭଞ୍ଜଙ୍କର ଅପ୍ରକାଶିତ ଲେଖା ସଂଗ୍ରହ କରି ପ୍ରକାଶ କରିବା ଇତ୍ୟାଦି ଉଦ୍ଦେଶ୍ୟ ଗୁଡିକ ରଖାଯାଇଥିଲା । ମହାବିଦ୍ୟାଳୟ ପ୍ରତିଷ୍ଠାରେ ପଣ୍ଡିତ ଶତପଥିଙ୍କ ଉଦ୍ୟମ ପ୍ରଶଂସନୀୟ ଥିଲା ।

ରସଲକେଣ୍ଡାର ନାମ ପରିବର୍ତ୍ତନ କରି ଭଞ୍ଜନଗର ନାମ କରଣ ପାଇଁ ପରିଷଦର ଗୋଠିଏ ପରିଷଦର ଗୋଟିଏ ବୈଠକରେ ପ୍ରସ୍ତାବ ଗ୍ରହଣ କରାଯାଇ ଓଡିଶା ସରକାରଙ୍କ ପାଖକୁ ପଠାଯାଇଥିଲା । ସେତେବେଳେ ଓଡିଶାରେ ଡଃ: ହରେକୃଷ୍ଣ ମହତାବ ପ୍ରଧାନମନ୍ତ୍ରୀ (ସେତେବେଳେ ମୂଖ୍ୟମନ୍ତ୍ରୀଙ୍କୁ ପ୍ରଧାନ ମନ୍ତ୍ରୀ କୁହାଯାଉଥିଲା ) ଥିଲେ । ସେ ନାମ ପରିବର୍ତ୍ତନ ପ୍ରସ୍ତାବଟି ଆଗ୍ରହର ସହିତ ଗ୍ରହଣ କରିଥିଲେ । ଡ: ମହତାବଙ୍କ

ରସଲକେଣ୍ଡା ଗସ୍ତବେଳେ ରଘୁନାଥ ମନ୍ଦିର ସାମନାରେ ଥିବା ଦୁଇମହଲା କୋଠାରେ ସେତେବେଳେ ଜଲି କ୍ଲ ବ ନାମରେ ଗୋଟିଏ କ୍ଲବ ଚାଲୁଥିଲା । ସେଠାରେ ଡଃ ମହତାବଙ୍କୁ ସହରବାସୀଙ୍କ ତରଫରୁ ନାଗରୀକ ସମ୍ବର୍ଦ୍ଧନା ଦିଆଯାଇଥିଲା । ସେଥିରେ ରସଲକେଣ୍ଡାର ନାମ ପରିବର୍ତ୍ତନ କରି ଭଞ୍ଜନଗର ନାମକରଣକୁ ବିଶେଷ ଜୋରଦେଇ ସହର ବାସୀଙ୍କ ପକ୍ଷରୁ ଅନୁରୋଧ କରାଯାଇଥିଲା । ଡଃ ମହତାବ ପରିଷଦ ପକ୍ଷରୁ ଜଣେ କର୍ମକର୍ତ୍ତା ରାଜଧାନୀକୁ ଯାଇ ତାଙ୍କ ସହିତ ଏ ବିଷୟରେ ଆଲୋଚନା କରିବାପାଇଁ କହିଥିଲେ । ପରିଷଦ ବୈଠକରେ ଏ ବିଷୟ ଆଲୋଚିତ ହୋଇ ମତେ ଏହି କାର୍ଯ୍ୟରେ ରାଜଧାନୀକୁ ପଠାଇବାପାଇଁ ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ସେହି ପ୍ରକାରେ ମୁଁ କଟକ ଯାଇ ବାରବାଟିଠାରେ ସେତେବେଳେ ହେଉଥିବା ରାଜଧାନୀ କାର୍ଯ୍ୟାଳୟରେ ଡଃ ମହତାବଙ୍କ ସହିତ ଆଲୋଚନା କରିଥିଲି । ସେ କେତୋଟି ପ୍ରଶ୍ନ ପଚାରିଥିଲେ । ମୁଁ ତାର ଯଥାଯଥ ଉତ୍ତର ଦେଇଥିଲି । ଡଃ ମହତାବ ଏଥିରେ ସନ୍ତୁଷ୍ଟ ହୋଇ ଥିଲେ । ୧୯୫୩ ମସିହା ଓଡିଶା ଗେଜେଟରେ ରସଲକେଣ୍ଡାର ନାମ ପରିବର୍ତ୍ତିତ ହୋଇ ଭଞ୍ଜନଗର ହେଲା ବୋଲି ପ୍ରକାଶ ପାଇଥିଲା । ସହରବାସୀଙ୍କ ପକ୍ଷରୁ ଆନନ୍ଦଉଲ୍ଲାସ ମଧ୍ୟରେ ଉଦ୍ଘାଟନ ଉତ୍ସବ ପାଳିତ ହୋଇଥିଲା ।

ପରିଷଦର ସମ୍ବିଧାନ ପ୍ରକାର ଅନ୍ୟ ଉଦ୍ଦେଶ୍ୟ ଗୁଡିକ ଗୋଟିଏ ଗୋଟିଏ କରି ପୂର୍ଣ୍ଣତା ଲାଭ କରିଥିଲା ।

୧୯୫୪ ମସିହା ପର୍ଯ୍ୟନ୍ତ ପରିଷଦର ସଂପାଦକ ଦାୟିତ୍ୱ ହରି ହର ସ୍ୱାଇଁ ଓ ମୁଁ ବହନ କରି କାର୍ଯ୍ୟକଳାପରେ ଓଡିଶା ସରକାରଙ୍କ ଲୋକ ସଂପର୍କ ବିଭାଗରେ ଚାକିରିପାଇଁ ମୁଁ ଭଞ୍ଜନଗର ଛାଡିବାକୁ ବାଧହୋଇଥିଲି । ପରିଷଦର ସଂପାଦକ ଦାୟିତ୍ୱ ମଧ୍ୟ ଛାଡିବାକୁ ହୋଇଥିଲା ।

ମୁଁ ଚାକିରୀପାଇ ଚାଲିଯିବା ପରେ ଆଉଜଣେ ପରିଷଦର ସଂପାଦକ ଦାୟିତ୍ୱ ଗ୍ରହଣ କରିଥିଲେ । କିନ୍ତୁ ସେମାନେ ବେଶିଦିନ ତୁଲାଇ ପାରିନଥିଲେ । ଶେଷକୁ ପଣ୍ଡିତ ଶତପଥି ସଂପାଦକ ଦାୟିତ୍ୱ ବହନ କରିଥିଲେ । ତାଙ୍କ ସମୟରେ ପରିଷଦର ଉନ୍ନତି ପରିଲକ୍ଷିତ ହୋଇଥିଲା । ପରିଷଦ ପକ୍ଷରୁ ତାଙ୍କ ଦ୍ୱାରା ସଂଗୃହିତ ଦୁଇଖଣ୍ଡ ଭଞ୍ଜଙ୍କ ଅପ୍ରକାଶିତ କାବ୍ୟ ପ୍ରକାଶ ପାଇଥିଲା । ତାଛଡା ସେ ଭଞ୍ଜଙ୍କ ବିଷୟରେ ଆଉ ଚାରିଖଣ୍ଡ ବହି ଭଞ୍ଜସାହିତ୍ୟ ପ୍ରେମୀଙ୍କ ସହାୟତାରେ ପ୍ରକାଶ କରିଥିଲେ । ଭଞ୍ଜଙ୍କ ସାହିତ୍ୟ ଛଡା ସେ ଚନ୍ଦ୍ରପ୍ରଭା ନାମରେ ଗୋଟିଏ କାଳ୍ପନିକ କାବ୍ୟ ରଚନା କରି ପ୍ରକାଶ କରିଥିଲେ ।

ପଣ୍ଡିତ ଶତପଥୀ ତିନୋଟି ବିଷୟରେ ବିଶାରଦ ଥିଲେ । ସେ ପ୍ରଥମେ କର୍ମକାଣ୍ଡ

ବିଶାରଦ,ତାପରେ ଜ୍ୟୋତିଷ ବିଶାରଦ, ଓ ତାପରେ ସାହିତ୍ୟ ବିଶାରଦ ଥିଲେ । ସେ ଜଣେ ଜ୍ଞାନର ଭଣ୍ଡାର ଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ । ତାଙ୍କର ଧୀରସ୍ଥିର ସ୍ୱଭାବ,ବାଗ୍ମିତା, ବନ୍ଧୁବତ୍ସଳ ତାଙ୍କୁ ବିଶେଷ ଲୋକପ୍ରିୟ କରି ପାରିଥିଲ ।

ସେ ବହୁ ଅନୁଷ୍ଠାନ ପକ୍ଷରୁ ଉପାଧି, ସମ୍ମାନ, ପୁରସ୍କାର, ମାନପତ୍ର ଓ ଉପାୟନ ଇତ୍ୟାଦି ଲାଭ କରିଥିଲେ । ସେ ଟେକଲି ରାଜାଙ୍କଠାରୁ ଜ୍ୟୋତିର୍ବିନୋଦ ଉପାଧି ଲାଭ କରିଥିଲେ । ଗୁଣ ଚିହ୍ନେ ଗୁଣିଆଁପରି ତାଙ୍କ ଉପରେ ସେସବୁ ଅଜାଡି ହୋଇ ପଡୁଥିଲା ।

ସେ ମତେ ଏତେ ଭଲପାଉଥିଲେ ଯେ ଯେତେବେଳେ ଦେଖିଲେ ସେ ମୋ ସହିତ ସହୃଦୟତାର ସହିତ ବିଭିନ୍ନ ବିଷୟରେ କଥାବାର୍ତ୍ତା କରୁଥିଲେ । ସେଥିଲେ ମୋର ମଧୁର ସମ୍ପର୍କ, ସେ ମୋର ଶ୍ୱଶୁରଙ୍କର ଭଣଜା ହିସାବରେ ମୋ ସ୍ତ୍ରୀଙ୍କ ଭାଇ ହିସାବରେ ସେ ମୋର ସ୍ତ୍ରୀଙ୍କୁ ଯେତେବେଳେ ଦେଖିଲେ ମଧ ତାଙ୍କର ସ୍ୱାସ୍ଥ୍ୟ ବିଷୟରେ ପଚାରି ବୁଝୁଥିଲେ, ଯେହେତୁ ମୋର ସ୍ତ୍ରୀ କ୍ୟାନସର ପରି ଦୁରାରୋଗ୍ୟରେ ପୀଡିତ ଥିଲେ ।

ଭଞ୍ଜ ସାହିତ୍ୟ ଉପରେ ତାଙ୍କର ଆଲୋଚନା ଉଚ୍ଚକୋଟିର ଥିଲା । ମୁଁ ଚାକିରୀ କ୍ଷେତ୍ରରେ ଯେଉଁଠି ଥିଲେ ମଧ ତାଙ୍କ ପ୍ରକାଶିତ ବହିରୁ ଖଣ୍ଡିଏ ଖଣ୍ଡିଏ ସେ ମତେ ଦେଉଥିଲେ । ମୁଁ ମଧ ମୋର ପ୍ରକାଶିତ ବହିରୁ ତାଙ୍କୁ ଖଣ୍ଡିଏ ଖଣ୍ଡିଏ ଦେଉଥିଲି । ସ୍ନେହ, ଶ୍ରଦ୍ଧା ଓ ସୌହାର୍ଦ୍ଦ୍ୟରେ ଆମେ ଦୁହେଁ ବାନ୍ଧି ହୋଇ ରହିଥିଲୁ ।

ସେ ଆମ ଭିତରୁ ଚାଲିଯାଇଛନ୍ତି ସତ, କିନ୍ତୁ ତାଙ୍କର ସ୍ନେହ,ଶ୍ରଦ୍ଧା ମୋର ଚିରଦିନ ମନେ ରହିବ ।

ସ୍ୱାଧୀନତା ସଂଗ୍ରାମୀ
ଅବସର ପ୍ରାପ୍ତ ଜିଲ୍ଲା ଲୋକସମ୍ପର୍କ ଅଧିକାରୀ
ଭଞ୍ଜନଗର (ଗଞ୍ଜାମ)

*****

# ଶ୍ରୀ ଶ୍ରୀଧର ଭାଇନା

କବିରାଜ ପଣ୍ଡିତ ଦେବୀପ୍ରସାଦ ତ୍ରିପାଠୀ ଶର୍ମା

ସିଦ୍ଧ ସାଧକ ସେବିତ ଉତ୍କଳର ଦକ୍ଷିଣ ଭୂଭାଗରେ ଭଞ୍ଜବଂଶୀୟ ରାଜାଗଣ ଶାସନ କରୁଥିଲେ । ସେହି ରାଜ ବଂଶୀୟଗଣ ପ୍ରାୟ ବହୁ ଶାସ୍ତ୍ରଦର୍ଶୀ ଏବଂ ବିଷ୍ଣୁଭକ୍ତ ଥିଲେ ।

୧୭୩୯ ମସିହାରେ ତଦାନିନ୍ତନ ରାଜା ଗୁମୁସର ରାଜ୍ୟର ପୁରାତନ ଗଡ ବରପଲ୍ଲୀଠାରେ ଗୋଟିଏ ଶ୍ରୀ ଶ୍ରୀ ବାସୁଦେବ ମନ୍ଦିର ପ୍ରତିଷ୍ଠା କରିବା ପାଇଁ ଇଚ୍ଛୁକ ହୋଇ ଉତ୍କଳର ନାନା ପ୍ରାନ୍ତରରୁ ବିଦ୍ୱାନ ବ୍ରାହ୍ମଣଗଣଙ୍କୁ ଆନୟନ କରି, ମନ୍ଦିର ପ୍ରତିଷ୍ଠା ସହିତ ଗୋଟିଏ ମହାଯଜ୍ଞ କରାଇଥିଲେ । ସେହି ଯଜ୍ଞରେ ନିମନ୍ତ୍ରିତ ବ୍ରାହ୍ମଣ ମାନଙ୍କ ମଧ୍ୟରେ ତ୍ରିପାଠୀ,ଶତପଥୀ ଏବଂ ମିଶ୍ର ସଜ୍ଞାଧାରୀ ବ୍ରାହ୍ମଣଗଣ ଯାଜ୍ଞିକ ରୂପରେ ପ୍ରତିଷ୍ଠା ଲାଭ କଲେ ।

ରାଜା ସେମାନଙ୍କ ଉଦ୍ଦେଶ୍ୟରେ ମନ୍ଦିର ପ୍ରତିଷ୍ଠା ସଙ୍ଗେ ସଙ୍ଗେ ଗୋଟିଏ ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରି, ବାସୁଦେବପୁର ଶାସନ ନାମରେ ନାମିତ କଲେ ।

ବାସୁଦେବପୁର ଶାସନରେ ବଂଶାନୁକ୍ରମରେ ଶତପଥୀ ବଂଶଧରଗଣ ଜ୍ୟୋତିଷ ଏବଂ କର୍ମକାଣ୍ଡକୁ କୌଳିକ ବୃତ୍ତି ରୂପରେ ଗ୍ରହଣ କଲେ । ସେହି ବଂଶରେ ଶ୍ରୀଧର ଶତପଥୀଙ୍କର ଜନ୍ମ । ଶତପଥୀ ବଂଶ ସହିତ ଆମ୍ଭ ତ୍ରିପାଠୀ ବଂଶର ସମ୍ବନ୍ଧ ସମଗ୍ରାମବାସୀ ଭାବରେ ଘନିଷ୍ଠତା ପୂର୍ବରୁ ରହିଆସିଛି । ଶ୍ରୀ ଶ୍ରୀଧର ଶତପଥୀଙ୍କର ପିତୃ ପିତାମହାଦିପୂର୍ବ ପୁରୁଷ ଗଣ ଶ୍ରେଷ୍ଠ ଯାଜ୍ଞିକ ଏବଂ ଜ୍ୟୋତିଷ ଶାସ୍ତ୍ର ବେତ୍ତା ଥିଲେ ।

ଶ୍ରୀଯୁକ୍ତ ଶ୍ରୀଧର କୌଳିକ ବୃତ୍ତିରେ ପାରଦର୍ଶୀ ଥିଲେ ମଧ୍ୟ ସ୍ୱଗ୍ରାମରେ ରହି ଜୀବନ ନିର୍ବାହ କରିବା ଦୁରୂହ ହେବା ଯୋଗୁଁ, ସ୍ୱନିବାସ ପରିତ୍ୟାଗ ପୂର୍ବକ ରସଲକେଣ୍ଡା (ଭଞ୍ଜନଗର) ପ୍ରତି ଆସକ୍ତ ହୋଇ ନିବାସ ଯୋଗ୍ୟ ବୋଲି ନିର୍ଣ୍ଣୟ କରି ବାସୁଦେବ ପୁରରୁ ଆଗମନ ପୂର୍ବକ, ପ୍ରଥମେ ଭଡା ଗୃହରେ ରହି, ଜ୍ୟୋତିଷ ଏବଂ ପୌରହିତ୍ୟ ବୃତ୍ତି ଅବଲମ୍ବନ କଲେ ।

ତା'ପରଠାରୁ ରସଲକୋଣ୍ଡାରେ ଆମ୍ଭ ଦୁଇ ବଂଶର ସମ୍ବନ୍ଧ ଘନୀଭୂତ ହେବାକୁ ଲାଗିଲା । ମୋର ପିଲା ଦିନରୁ ତାହାଙ୍କୁ ଶ୍ରୀଧର ଭାଇନା ବୋଲି ସମ୍ବୋଧନ କରିବାକୁ ଲାଗିଲି ।

ମୋର ପିତୃଦେବ ବୈଦ୍ୟବାଚସ୍ପତି ପଣ୍ଡିତ ଶ୍ରୀବ୍ରଜବନ୍ଧୁ ତ୍ରିପାଠୀ ଚିକିତ୍ସା କ୍ଷେତ୍ରରେ ମନ୍ତ୍ର ଚିକିତ୍ସା କରିବା ପାଇଁ ଯେତେ ପ୍ରକାର ମନ୍ତ୍ର ଚିକିତ୍ସାନୁଷ୍ଠାନ କରନ୍ତି, ସେହି ଅନୁଷ୍ଠାନ ମାନଙ୍କରେ ଶ୍ରୀଧର ଭାଇନାଙ୍କୁ ଆଚାର୍ଯ୍ୟ ରୂପରେ ବରଣ କରି 'ଅପାମାର୍ଜ୍ଜନ ପ୍ରୟୋଗ ଏବଂ ମହାମୃତ୍ୟୁଞ୍ଜୟ ପ୍ରୟୋଗ ପ୍ରଭୃତି ମନ୍ତ୍ର ଚିକିତ୍ସା ଦ୍ୱାରା କେତେକ ଦୁରାରୋଗ୍ୟ ରୋଗ ଆରୋଗ୍ୟ କରି ସେହି ସମୟରେ ଶ୍ରୀଧର ଭାଇନାଙ୍କର ପୂଜାର କର୍ମ୍ମ ଗୁଡିକ ମୁଁ ଲକ୍ଷ୍ୟ କରୁଥାଏ । ନିର୍ଭୁଲ ଭାବରେ ମନ୍ତ୍ରଗୁଡିକର ଉଚ୍ଚାରଣ ସହିତ ମୁଦ୍ରାଗୁଡିକ ଅତି ସରଳ ଭାବରେ ସେ ପ୍ରଦର୍ଶନ କରୁଥାନ୍ତି ।

୧୯୫୩ ମସିହାରେ ଘୁମୁସରରେ ଅନାବୃଷ୍ଟି ଏବଂ ବେଲଗୁଣ୍ଠାରେ ହଇଜାର ପ୍ରକୋପ ଅତି ଭୟଙ୍କର ଆକାର ଧାରଣ କଲା । ଗ୍ରାମବାସୀ ଏହାର ପ୍ରତିବିଧାନ ନିମନ୍ତେ ଶ୍ରୀ ଶ୍ରୀ ନୃସିଂହନାଥ ମନ୍ଦିରରେ ଗୋଟିଏ ସଭାର ଆୟୋଜନ କଲେ । ସଭାରେ ନିଶ୍ଚୟ କରାଗଲା, ବୈଦ୍ୟ ବାଚସ୍ପତିଙ୍କର ତତ୍ତ୍ୱାବଧାନରେ 'କାରିରି ଯଜ୍ଞ' କରିବା ନିଶ୍ଚୟ ହେଲା । ସେହି ଯଜ୍ଞରେ ଘନଶ୍ୟାମ ହୋତା (ବୁଗୁଡା) ଶ୍ରୀଧର ହୋତା (ଗୋଲିଆ) ଶ୍ରୀଧର ଶତପଥୀଙ୍କୁ ଆଚାର୍ଯ୍ୟ ପ୍ରଚାରକ ଚଣ୍ଡୀପାଠକ ରୂପରେ ବରଣ କରାଗଲା । ସେହି ଯଜ୍ଞର ପୂର୍ଣ୍ଣ ଦିବସରେ ପ୍ରଚୁର ପରିମାଣରେ ବୃଷ୍ଟି ହେବା ସଙ୍ଗେ ସଙ୍ଗେ ହଇଜାର ପ୍ରକୋପ ଶାନ୍ତ ହୋଇଗଲା ।

ଇତ୍ୟବସରରେ ଦିନେ ମୁଁ ଶ୍ରୀଧର ଭାଇନାଙ୍କ ଅନୁପସ୍ଥିତିରେ ସେହି ଯଜ୍ଞକ୍ଷେତ୍ରରେ, ଚଣ୍ଡୀ ବହିଟିକୁ ଆଣି ପଢିବା ଆରମ୍ଭ କଲି । ଭାଇନା କହିଲେ, ଚଣ୍ଡୀ ପାଠରେ ଭୁଲ ହେଲେ ସୁଫଳ କୁଫଳରେ ପରିଣତ ହେବ । ମୁଁ କହିଲି ଭାଇନା ଆସନ୍ତା ବର୍ଷ ଏହି ଦିବସରେ ମୋ ମୁଖରୁ ମୁଖସ୍ଥ ଚଣ୍ଡୀପାଠ ଶ୍ରବଣ କରିବ । ସେହି ଦିନ ଠାରୁ ଅଦ୍ୟାବିଧି ମୁଁ ଚଣ୍ଡୀ ପାଠ କରି ଆସୁଛି ।

୧୯୬୨ ମସିହାରେ ଅଷ୍ଟଗ୍ରହ କୂଟ ହେଲା । ଭଞ୍ଜନଗର ରଘୁନାଥ ମନ୍ଦିରରେ ଗୋଟିଏ ଯଜ୍ଞର ଆୟୋଜନ କରାଗଲା । ସେହି ଯଜ୍ଞରେ ଶ୍ରୀ ପଦ୍ମଚରଣ ଦାଶ ଆଚାର୍ଯ୍ୟ ଥିଲେ । ସେ ମହାଶୟ ମୋ ନିକଟକୁ ଆସି କହିଲେ- ତୁମର ନନା ଚଣ୍ଡୀ ପାଠ କରୁଥିଲେ । ବର୍ତ୍ତମାନ ସେ ବେଲଗୁଣ୍ଠାରେ ରହୁଛନ୍ତି । ଶୁଣୁଛି ତୁମେ ଚଣ୍ଡୀ ପାଠ କରୁଛ । ଏହି ଯଜ୍ଞରେ ତୁମେ ଚଣ୍ଡୀ ପାଠ କରିବ । ମୁଁ ପଦ୍ମଚରଣ ଦାଶଙ୍କ ଠାରୁ ନିମନ୍ତ୍ରିତ ହୋଇ କିଂ କର୍ତ୍ତବ୍ୟ ବିମୁଢ ହୋଇଗଲି । ସଙ୍ଗେ ସଙ୍ଗେ ଶ୍ରୀଧର ଭାଇନାଙ୍କ ନିକଟକୁ ଯାଇ କହିଲି ।'' ଭାଇନା ପଦ୍ମଚରଣ ଦାଶ ମହାଶୟ ମୋତେ ଚଣ୍ଡୀ ପାଠ କରିବାକୁ ନିମନ୍ତ୍ରଣ ଦେଲେ '' । କିନ୍ତୁ ମୋତେ ପୂଜାଆସୁନାହିଁ । ମୁଁ ପୂଜା କରିପାରିବି ନାହିଁ । କିପରି ଚଣ୍ଡୀପାଠ ହେବ ?

ଭାଇନା କହିଲେ - ଆରେ ଭାଇ ! ମୁଁ ପୂଜା କରି ଦେବି ତା'ପରେ ତୁ ଚଣ୍ଡୀପାଠ କରିବୁ ।

ସେହି ଯଜ୍ଞ ତ୍ରିଦିବସୀୟ ଥିଲା । ସେହି ତିନି ଦିନ ମୋର ଚଣ୍ଡୀ ପାଠ ପୂର୍ବରୁ-ସେ ପୂଜା କରନ୍ତି । ତା'ପରେ ମୁଁ ଚଣ୍ଡୀପାଠ କରେ ।

ତା'ପରେ ଭଞ୍ଜନଗରରେ ଯେତେ ପ୍ରକାର ଯଜ୍ଞ,ପୂଜା,ଯାତ୍ରା ପ୍ରଭୃତିରେ ମୁଁ ଚଣ୍ଡୀ ପାଠକ ରୂପରେ କର୍ମ୍ମ ସମାପନ କରି ଆସୁଛି ।

୧୯୬୨-୬୫ ପର୍ଯ୍ୟନ୍ତ ଭଞ୍ଜ ସାହିତ୍ୟ ଦୁର୍ଗାପୂଜାରୁ ସେ ଅନ୍ତର ହୋଇ, ଇରିଗେଶନ୍ ଦୁର୍ଗା ପୂଜାରେ ଯୋଗ ଦେଲେ ।

୧୯୪୪ ମସିହାଠାରୁ ରସଲକେଣ୍ଡାରେ ଭଞ୍ଜସାହିତ୍ୟ ପରିଷଦ ଗଠନ କରାଗଲା । ସେହି ପରିଷଦର ସଭ୍ୟରୂପରେ ଜୀବନବର୍ତ୍ତିକା ବିଲୋପ ପର୍ଯ୍ୟନ୍ତ ସେ ରହିଥିଲେ । ଏହା ମଧରେ ତାହାଙ୍କର ଅନ୍ତର୍ଜ୍ୟୋତି ସାହିତ୍ୟିକ ରୂପରେ ପ୍ରକାଶ ପାଇଲା । ମୁଁ ସାହିତ୍ୟିକ କୃତି ବିଷୟରେ ତା'ହାଙ୍କ ଲିଖିତ ଭଞ୍ଜସନ୍ଦର୍ଭ ଅଧୟନ କରି, ହୃଦୟଙ୍ଗମ କରିପାରିଛି । ୧୯୯୫ ମସିହାରେ ନିୟତି ଗବେଷଣା କେନ୍ଦ୍ର ତରଫରୁ ଭାଇନାଙ୍କୁ ''କର୍ମ୍ମକାଣ୍ଡରତ୍ନ'' ଉପାଧିରେ ଭୂଷିତ କରାଗଲା ।

ଭଞ୍ଜନଗର ଶ୍ରୀ ଶ୍ରୀ ବ୍ୟାଘ୍ରଦେବୀଙ୍କର ଯାତ୍ରା ହୋମରେ ଶ୍ରୀ ଶଶିଭୂଷଣ ତିଆଡୀ, ଉମାକାନ୍ତ ମିଶ୍ରଙ୍କ ଉପସ୍ଥିତିରେ ''ଦୁର୍ଗାଙ୍କର ଗୋଟିଏ ମନ୍ତ୍ରରେ ହୋମୀୟ ଆହୁତି ପ୍ରଦାନ କରାଯାଉଥିଲା, ''ଉତିଷ୍ଠ ପୁରୁଷୀ କିଂ ସ୍ୱପିଷି ଭୟଂମେ ସମୁପ ସ୍ଥିତଂ ଯଦି ଶକ୍ୟଂ ଅଶକ୍ୟଂ ବାହୁଂହୁଂ ଦୁର୍ଗେ ଭଗବତି ଶମୟସ୍ୱାହା '' । ଏହି ମନ୍ତ୍ର ପଠନରେ ପଦ୍ମଚରଣ ଦାଶ 'ହୁଂ' ସ୍ଥାନରେ 'ଦୁଂ' ଉଚ୍ଚାରଣ କରିଦେଲେ । ଉମାକାନ୍ତ ମିଶ୍ର ବାବୁ କହିଲେ ହୁଂ ଦୁଂ ଏହାରି ମଧ୍ୟରୁ କେଉଁ ବୀଜାକ୍ଷର ଠିକ୍ ନିଶ୍ଚୟ କରନ୍ତୁ । ଆହୁତି ପ୍ରଦାନ କରିବା, ସେହି ସମୟରେ ପ୍ରତ୍ୟୁତ୍ପନ୍ନ ମତି ଶ୍ରୀଧର ଭାଇନା ମନ୍ତ୍ରଟିକୁ ଅର୍ଥକରି ମନ୍ତ୍ର ଚୈତନ୍ୟ ପୂର୍ବକ ଉଭୟ ବୀଜାକ୍ଷର ପ୍ରୟୋଗ କରିବାକୁ ହେବ ବୋଲି ମତ ପ୍ରକାଶ କଲେ ।

ଏଠାରେ ଭାବିବା କଥା- ନିଜେ ପ୍ରଚାରକ ରୂପରେ ଯେଉଁ ଉଚ୍ଚାରଣ ଏବଂ ଆଚାର୍ଯ୍ୟଙ୍କର ଉଚ୍ଚାରଣ ଉଭୟ ଭୁଲ ବୋଲି ପ୍ରମାଣିତ କରି ଉଭୟଙ୍କର ଉଚ୍ଚାରଣକୁ ଏକତ୍ର ପ୍ରୟୋଗ କରି ସିଦ୍ଧ କରିବା କର୍ମକାଣ୍ଡୀ ବିରଳ ।

ଶ୍ରୀଧର ଭାଇନା ତୁମେ ଯେଉଁଠାରେ ଥାଅ ମୋର ନମସ୍କାର ଗ୍ରହଣ କର ।

ଜୀବନବନ୍ଧୁ ଔଷଧାଳୟ
ଭଞ୍ଜନଗର (ଗଞ୍ଜାମ) ।

*****

# ଏକ ଅମଳିନ ବ୍ୟକ୍ତିତ୍ୱ : ପଣ୍ଡିତ ଶ୍ରୀଧର ଶତପଥୀ

ଡକ୍ଟର ପ୍ରମୋଦ କୁମାର ମିଶ୍ର

ଅନ୍ତରଙ୍ଗ ବ୍ୟକ୍ତି ପ୍ରତିଷ୍ଠିତ ହୋଇଥିଲେ, ତାଙ୍କ ବିଷୟରେ କିଛି ଲେଖିବା ବେଳେ ମନରେ ଶଙ୍କା ଉଦ୍ରେକ ହୁଏ । କାରଣ ସଂପୃକ୍ତ ବ୍ୟକ୍ତିଙ୍କ ପ୍ରତିଷ୍ଠା ଯେଉଁ ପ୍ରତିଭାଦ୍ୱାରା ପ୍ରେରିତ ତାହାର ରହସ୍ୟ ସମ୍ମାନର ସହିତ ଉନ୍ମୋଚିତ କରିବାରେ ଅସମାର୍ଥ୍ୟ ପ୍ରକାଶ କରିପାରେ । ଭାବାତିଶଯ୍ୟାରେ ଅତିରଞ୍ଜନ କରି ଲେଖି ଦିଆଯାଇପାରେ । ଯାହା ଲେଖିବା ଉଚିତ ତାକୁ ବାଦ ମଧ୍ୟ ଦିଆଯାଇପାରେ । ଅଥବା ସ୍ଥଳବିଶେଷରେ ଶୋଭନୀୟତା ବ୍ୟାହତ ହୋଇପାରେ । ପଣ୍ଡିତ ଶ୍ରୀଧର ଶତପଥୀଙ୍କ ସହ ମୋର ସମ୍ପର୍କ ଏତେ ଘନିଷ୍ଠ ଯେ ଏପରି ଆଶଙ୍କା କରିବା ସ୍ୱାଭାବିକ । ସେ ମୋର ବନ୍ଧୁ ବା କୁଟୁମ୍ବର ନ ହେଲେ ବି ଅତି ଆପଣାର ଥିଲେ । ମୋ ନନାଙ୍କୁ ସେ ନା'ଧରି ସମ୍ବୋଧନ କରୁଥିଲେ । ମୋତେ ସନ୍ତାନ ପରି ବ୍ୟବହାର କରୁଥିଲେ । ଭଲ ମନ୍ଦ ପଚାରି ବୁଝୁଥିଲେ । ପଣ୍ଡିତ ମହାଶୟଙ୍କ ସନ୍ନିଧି ହେତୁ ମୋ ଜୀବନରେ ଅନେକ ଉପକାର ହୋଇଛି ।

ଘୁମୁସର ଏକ ପବିତ୍ର ଭୂମି । ଯେଉଁ ଭୂମି ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ ସାଧନାର ପୀଠସ୍ଥଳ,ଦୋହରା ବିଷୋୟୀ, ଚକରା ବିଷୋୟୀ ଭଳି ଜାତୀୟବାଦୀ ବୀର ରକ୍ତରେ ଯାହାର ବକ୍ଷ ରଞ୍ଜିତ । ସଂସ୍କାରକ ଶ୍ରୀବତ୍ସ ପଣ୍ଡାଙ୍କ କୁସଂସ୍କାର ଓ ଅନ୍ଧବିଶ୍ୱାସ ବିରୁଦ୍ଧରେ ଯେଉଁ ଭୂମି ପ୍ରକମ୍ପିତ ସେହି ପବିତ୍ର ମାଟିରେ ଜନ୍ମଗ୍ରହଣ କରିଥିବାରୁ ପଣ୍ଡିତ ଶତପଥୀ ଗର୍ବ କରୁଥିଲେ ।

ପଣ୍ଡିତ ମହାଶୟ ଥିଲେ ଏକ ବହୁମୁଖୀ ପ୍ରତିଭା ସଂପନ୍ନ ବ୍ୟକ୍ତି । ଜ୍ୟୋତିଷ, କର୍ମକାଣ୍ଡ, ସାହିତ୍ୟ,ଶକୁନ ଶାସ୍ତ୍ର ଇତ୍ୟାଦି ବହୁ ବିଦ୍ୟାରେ ସେ ପାରଙ୍ଗମ ଥିଲେ । ସୁଦର୍ଶନ, ବପୁବନ୍ତ, ଗୌରବର୍ଣ୍ଣ ଶରୀରଧାରୀ ପଣ୍ଡିତ ମହାଶୟ ଭଞ୍ଜନଗର ଏବଂ ତାର ଆଖ ପାଖ ଅଞ୍ଚଳରେ ଜଣେ ସମ୍ମାନନୀୟ ବ୍ୟକ୍ତି ଥିଲେ । ତା'ଙ୍କ ଶ୍ରଦ୍ଧାଶୀଳ ବ୍ୟକ୍ତିତ୍ୱକୁ ପଣ୍ଡିତ ଉପାଧିଟି ଶୋଭା ପାଉଥିଲା । ନିଜର କର୍ମ ଝଞ୍ଜାଳରେ ବ୍ୟସ୍ତ ରହି ମଧ୍ୟ ସାହିତ୍ୟ ସାଧନା ଓ ସାହିତ୍ୟ ଚର୍ଚ୍ଚାକୁ ସେ ଜୀବନର ବ୍ରତ ରୂପେ ଗ୍ରହଣ କରିଥିଲେ । ଜ୍ୟୋତିଷ, କର୍ମକାଣ୍ଡ ତାଙ୍କ ଜୀବିକା, ଭଞ୍ଜ ସାହିତ୍ୟ ତାଙ୍କ ଜୀବନ ଥିଲା । ଉପେନ୍ଦ୍ର ସାହିତ୍ୟର

ଆଲୋଚନା, ପ୍ରଚାର, ପ୍ରସାର ତଥା ଗବେଷଣାକୁ ସେ ଜୀବନର ଅଭିନ୍ନ ଅଙ୍ଗ ରୂପେ ଗ୍ରହଣ କରିନେଇଥିଲେ । ତା'ଙ୍କରି ଏହି ନିଷ୍ଠାପର ପ୍ରୟାସକୁ ମୁଁ ବାଲ୍ୟକାଳରୁ ଅତି ନିକଟରୁ ଦେଖିବାର ସୁଯୋଗ ପାଇଛି । ସେହି ନିରଳସ ସାରସ୍ୱତ ସାଧନା ହେତୁ ଭଞ୍ଜ ସାହିତ୍ୟର ଯେଉଁ ପ୍ରଚାର ପ୍ରସାର ହୋଇଛି ତଥା ଭଞ୍ଜନଗର ଓ ତା'ର ଆଖପାଖ ଅଞ୍ଚଳର ଛାତ୍ର ଏବଂ ଯୁବକମାନେ ଯେଭଳି ଉପକୃତ ହୋଇଛନ୍ତି ତା'ର କେତୋଟି ଦିଗକୁ ଏଠାରେ ଉପସ୍ଥାପିତ କରିବାକୁ ମୁଁ ଏ ଅବସରରେ ପ୍ରାସଙ୍ଗିକ ମନେ କରେ ।

(କ) ୧୯୬୫ ମସିହାରୁ ୧୯୭୪ ମସିହା ପର୍ଯ୍ୟନ୍ତ ମୋର ଛାତ୍ର ଜୀବନ ଭଞ୍ଜନଗର ଉପେନ୍ଦ୍ର ଭଞ୍ଜ ଉଚ୍ଚ ବିଦ୍ୟାଳୟ ଓ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ମହାବିଦ୍ୟାଳୟରେ ଅତିବାହିତ ହୋଇଥିଲା । ଏହି ସମୟରେ ଭଞ୍ଜ ସାହିତ୍ୟ ପରିଷଦକୁ କେନ୍ଦ୍ର କରି ଯେଉଁ ସାଂସ୍କୃତିକ କାର୍ଯ୍ୟକ୍ରମମାନ ଅନୁଷ୍ଠିତ ହେଉଥିଲା ସେଥିରୁ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ଦୀର୍ଘ ଏକ ସପ୍ତାହ ବ୍ୟାପୀ ସରସ୍ୱତୀ ପୂଜାଠାରୁ ଆରମ୍ଭ ହୋଇ ମହା ସମାରୋହରେ ପାଳିତ ହେଉଥିଲା । ଓଡିଶାରୁ ବହୁ ପ୍ରତିଷ୍ଠିତ ବ୍ୟକ୍ତି ଉପେନ୍ଦ୍ର ସାହିତ୍ୟର ଆଲୋଚନାରେ ଭାଗ ନେବା ପାଇଁ ନିମନ୍ତ୍ରିତ ହୋଇ ଆସୁଥିଲେ । ଏହି ଅବସରରେ ବିଦ୍ୟାଳୟ ଓ ମହାବିଦ୍ୟାଳୟ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଉପେନ୍ଦ୍ର ଭଞ୍ଜଙ୍କ ସଂଗୀତ ଗାନ ତଥା ପ୍ରବନ୍ଧ ଓ ବକ୍ତୃତା ପ୍ରତିଯୋଗିତା ଆୟୋଜନ କରାଯାଇଥିଲା । ପଣ୍ଡିତ ମହାଶୟ ଏକାକୀ ଅତ୍ୟନ୍ତ ନିଷ୍ଠାର ସହିତ ଏହି ସବୁ ପ୍ରତିଯୋଗିତା ଗୁଡିକୁ ସୁଚାରୁ ରୂପେ ସମ୍ପାଦନା କରୁଥିଲେ । ଏହିସବୁ ପ୍ରତିଯୋଗିତାରେ ମୋ ଭଳି ଅନେକ ଛାତ୍ର ଓ ଯୁବକ ଭାଗ ନେବାର ସୁଯୋଗ ପାଉଥିଲୁ ଏବଂ ଉପେନ୍ଦ୍ର ସାହିତ୍ୟ ପ୍ରତି ଆକୃଷ୍ଟ ହୋଇପଡିଥିଲୁ । ଉପେନ୍ଦ୍ରଭଞ୍ଜଙ୍କ ଅନେକ କାବ୍ୟରୁ ସୁନିର୍ବାଚିତ ପଦକୁ ମୁଖସ୍ଥ କରିବାପାଇଁ ଏହା ଏକ ଅପୂର୍ବ ସୁଯୋଗ ଥିଲା । ଏଥିପାଇଁ ପଣ୍ଡିତ ମହାଶୟ ହିଁ ଆମର ପଥପ୍ରଦର୍ଶକ । ସେ ଏହି ଗୌରବର ଅଧିକାରୀ ।

(ଖ) ଦୀର୍ଘ ଏକ ସପ୍ତାହ ବ୍ୟାପୀ ଉପେନ୍ଦ୍ର ଭଞ୍ଜଙ୍କ ଜୟନ୍ତୀ ଅବସରରେ ଓଡିଶାରେ ପ୍ରବୀଣ ବକ୍ତାମାନଙ୍କ ସହିତ ପଣ୍ଡିତ ମହାଶୟ ମୋଭଳି କେତେକ ଉପେନ୍ଦ୍ର ସାହିତ୍ୟ ପ୍ରେମୀ ଛାତ୍ର ଓ ଯୁବକଙ୍କୁ ସଭାମଞ୍ଚରେ ବକ୍ତୃତା ଦେବାପାଇଁ ସୁଯୋଗ ଦେଉଥିଲେ । ନିଜେ ପାଖରେ ରହି ଆମ୍ଭମାନଙ୍କୁ କହିବା ପାଇଁ ଅଭ୍ୟାସ ଆବଶ୍ୟକ ବୋଲି ପ୍ରେରଣା ଦେଉଥିଲେ, ଉତ୍ସାହିତ କରୁଥିଲେ । ମୋଭଳି ଯେଉଁମାନେ ଉତ୍ସାହ ଓ ପ୍ରେରଣା ପାଇଛନ୍ତି ତା'ର ଉପକାର ସେ ଜୀବନରେ ନିଶ୍ଚୟ ହୃଦୟଙ୍ଗମ କରିଥିବେ । ପଣ୍ଡିତ ମହାଶୟଙ୍କ ଏହି ମହାନୁଭବତା ପାଇଁ ଆମ୍ଭେ ତାଙ୍କ ଠାରେ କୃତଜ୍ଞ ।

(ଗ) ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟାବଳୀରେ ସଂସ୍କୃତ କାବ୍ୟ ସାହିତ୍ୟର ଅନେକ ଚମତ୍କାର ଶ୍ଳୋକ ଓଡିଆରେ ରୂପାନ୍ତରିତ ହୋଇ ସ୍ଥାନ ପାଇଛି । ଏଗୁଡିକର ତୁଳନାତ୍ମକ ବିଶ୍ଳେଷଣ ଏକ ସ୍ୱତନ୍ତ୍ର ଅଧ୍ୟୟନର ବର୍ଣ୍ଣ; ଯାହାକି ସଂସ୍କୃତ ସାହିତ୍ୟରେ ଅଗାଧ ପାଣ୍ଡିତ୍ୟ ବିନା ଅସମ୍ଭବ । ପଣ୍ଡିତ ଶତପଥୀ ସଂସ୍କୃତ କାବ୍ୟରେ ପ୍ରବୀଣ ଥିଲେ । ଉପେନ୍ଦ୍ର ସାହିତ୍ୟ ଆଲୋଚନା ବେଳେ ସଂସ୍କୃତ କାବ୍ୟର ବିଭିନ୍ନ ଉଦାହରଣ ସହିତ ଉପେନ୍ଦ୍ରଭଞ୍ଜଙ୍କ ରଚିତ ପଦଗୁଡିକର ତୁଳନାତ୍ମକ ଉପସ୍ଥାପନା କରି ସେ ନିଜର ପାଣ୍ଡିତ୍ୟ, ମନନ ଶୀଳତା ତଥା ଗଭୀର ଅଧ୍ୟୟନଶୀଳତାର ପରିଚୟ ଦେଉଥିଲେ । ଏପରି ଆଲୋଚନା ଅତ୍ୟନ୍ତ ପାଣ୍ଡିତ୍ୟପୂର୍ଣ୍ଣ ହେଉଥିଲା; ଏବଂ ଶ୍ରୋତାମାନଙ୍କୁ ଆକୃଷ୍ଟ କରିପାରୁଥିଲା ।

(ଘ) ପଣ୍ଡିତ ଶତପଥୀ ଏକ ସୁବକ୍ତା ସହିତ ଛାନ୍ଦ ଗାୟନରେ ପ୍ରବୀଣ ଥିଲେ । ଜୀବନର ଉତ୍ତୀର୍ଣ୍ଣ ବୟସ ପର୍ଯ୍ୟନ୍ତ ତାଙ୍କ ସୁମଧୁର କଣ୍ଠ ଅତୁଟ ଥିଲା । ଏପରି କଣ୍ଠରେ ଉପେନ୍ଦ୍ରଙ୍କ କାବ୍ୟଗୁଡିକର ବିଭିନ୍ନ ଛାନ୍ଦ ଗାନ ଶ୍ରୁତିମଧୁର ହୋଇପାରୁଥିଲା । ଏବଂ ଭାବ ଉଦ୍ରେକ କରିବାରେ ସମର୍ଥ ହୋଇପାରୁଥିଲା । ଉପେନ୍ଦ୍ର ସାହିତ୍ୟର ପ୍ରଚାର ଓ ପ୍ରସାର ପାଇଁ ଏହି ପ୍ରୟାସ ବାସ୍ତବରେ ମହାନ ଥିଲା ।

(ଙ) ଉପେନ୍ଦ୍ର ସାହିତ୍ୟର ଆଲୋଚନା, ସମାଲୋଚନା ଓ ଗବେଷଣାର ମନୋନିବେଶ କରିବାପାଇଁ ପଣ୍ଡିତ ମହାଶୟ ଆମ୍ଭକୁ ସତତ ଉତ୍ସାହିତ କରୁଥିଲେ । ତାଗିତ କରୁଥିଲେ ଏବଂ ବେଳେ ବେଳେ ମୃଦୁ ଭର୍ତ୍ସନା ମଧ୍ୟ ଦେଉଥିଲେ :- ''ତୁମେ ଯଦି ଭଞ୍ଜନଗର ଅଞ୍ଚଳର ଛାତ୍ର ବା ଅଧ୍ୟାପକହୋଇ ଉପେନ୍ଦ୍ର ସାହିତ୍ୟର ପ୍ରଚାର ଓ ପ୍ରସାର ନକରିବ: ଗବେଷଣା ପାଇଁ ମନ ନଦେବ, ଆଉ କିଏ ଏସବୁ କରିବ '' ତାଙ୍କଠାରୁ ଏପରି ପ୍ରେରଣା ପାଇ ମୁଁ ''ଉପେନ୍ଦ୍ର ଭଞ୍ଜଙ୍କ କାଞ୍ଚନିକ କାବ୍ୟ '' ଶୀର୍ଷକ ମୋର ଗବେଷଣା ସନ୍ଦର୍ଭ ପ୍ରସ୍ତୁତ କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପି: ଏଚ: ଡି ଉପାଧି ପ୍ରାପ୍ତ ହୋଇଛି । ମୋ ଭଳି ଅନେକ ଏହିପରି ଉପେନ୍ଦ୍ର ସାହିତ୍ୟ ଉପରେ କାର୍ଯ୍ୟ କରିବା ପାଇଁ ଉତ୍ସାହ ପାଇଛନ୍ତି । ଉପେନ୍ଦ୍ର ସାହିତ୍ୟକୁ ବ୍ୟାପକ ସ୍ତରରେ ପହଞ୍ଚାଇବାପାଇଁ ତାଙ୍କର ଏହି ପ୍ରୟାସ ପ୍ରଣିଧାନ ଯୋଗ୍ୟ ।

ଅନ୍ତିମ ଜୀବନରେ ତା'ଙ୍କ ଶରୀର ଅସୁସ୍ଥ ଦେଖି ମୋଭଳି ଅନେକଙ୍କ ମନରେ ଦୁଃଖ ଜାତ ହେଉଥିଲା । ପଣ୍ଡିତ ମହାଶୟ ମଧ୍ୟ ନିଜ ନିଜ ଶରୀରର ଅସୁସ୍ଥତା ହେତୁ ଯେତିକି ଦୁଃଖ କରୁ ନ ଥିଲେ; ଆଖିକୁ ଭଲ ଦେଖା ନଯିବା ଓ ପଢା ପଢି କରି ନ ପାରିବା କାରଣରୁ କ୍ଷୋଭ ପ୍ରକାଶ କରୁଥିଲେ । ତଥାପି ଆମ୍ଭେ ଚାହୁଁଥିଲୁ ପଣ୍ଡିତ ମହାଶୟ ବଞ୍ଚି

ରହିଥାନ୍ତୁ, ତା'ଙ୍କୁ ଦେଖି ଆମ୍ଭେମାନେ ପ୍ରେରଣା ପାଉଥାଉଁ; କିନ୍ତୁ କାଳ ତାହା କରାଇ ଦେଲା ନାହିଁ । ସେ ଆମ୍ଭମାନଙ୍କୁ ଛାଡି ଚାଲିଗଲେ । ତେବେ ତାଙ୍କରି ସାଧନା ଆମ୍ଭକୁ ପ୍ରେରଣା ଦେଉ ଏ ଅବସରରେ ଏତିକି କାମନା ।

*****

ରିଡର. ଓଡିଆ ବିଭାଗ
ସାମନ୍ତ ଚନ୍ଦ୍ରଶେଖର ପ୍ରାତଃ ମହାବିଦ୍ୟାଳୟ ,
ପୁରୀ

# ଭଞ୍ଜଶ୍ରୀଙ୍କ ଜୀବନର କେତେକ ଅଜ୍ଞାତ ପ୍ରସଙ୍ଗ

ଜ୍ୟୋତିର୍ବିଦ ପଣ୍ଡିତ ଶ୍ରୀ ନିରଞ୍ଜନ ପଟ୍ଟନାୟକ

ଘୁମୁସର ଯୁଗେ ଯୁଗେ ବୀର ଓ ବରପୁତ୍ରଙ୍କୁ ଜନ୍ମ ଦେଇ ଆସିଛି । ପ୍ରତାପ ଧନଞ୍ଜୟ ଭଞ୍ଜ, ନୀଳକଣ୍ଠ ଭଞ୍ଜ (୧), ବଳଭଦ୍ରଭଞ୍ଜ, ଉପେନ୍ଦ୍ରଭଞ୍ଜ, ତ୍ରିବିକ୍ରମ ଭଞ୍ଜ, ଘନଭଞ୍ଜ, ସୂର୍ଯ୍ୟମଣି ଚ୍ୟାଉ ପଟ୍ଟନାୟକ, ଦେହରା ବିଷୋୟୀ, ଚକରା ବିଷୋୟୀ, କତିକଟା ବାଳକୃଷ୍ଣ ପାତ୍ର, ଶ୍ରୀବସ୍ତ ପଣ୍ଡା, ଅନନ୍ତ ପଦ୍ମନାଭ ପଟ୍ଟନାୟକ, ବ୍ରଜବନ୍ଧୁ ତ୍ରିପାଠୀ, ଗୌରୀ କୁମାର ବ୍ରହ୍ମା, ଚନ୍ଦ୍ରଶେଖର ବ୍ରହ୍ମା, ଭଞ୍ଜଶ୍ରୀ ଶ୍ରୀଧର ଶତପଥୀ, ସୋମନାଥ ରଥ, ଉମାକାନ୍ତ ମିଶ୍ର, ଡଃ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ମନ୍ମଥ ଶତପଥୀ, ଜର୍ଜ ତିଆଡି, ରାଧାପଣ୍ଡା ପ୍ରଭୃତି ବହୁ ସାହିତ୍ୟିକ, ସମାଜ ସେବୀ, ଦେଶଭକ୍ତ, ସଂସ୍କାରକ ଓ କଳାକାରଙ୍କୁ ଜନ୍ମ ଦେଇ ଏ ମାଟି ଧନ୍ୟ ଓ ପବିତ୍ର ହୋଇଛି । ଏହି ସବୁ ବରପୁତ୍ର ମାନଙ୍କ ମଧ୍ୟରୁ ଗତବର୍ଷ ଆମ ନିକଟରୁ ବିଦାୟ ନେଇଥିବା ଭଞ୍ଜଶ୍ରୀ ପଣ୍ଡିତ ଶ୍ରୀଧର ଶତପଥୀ ଅନ୍ୟତମ । ସେ ଜଣେ ଜଣାଶୁଣା କବି ଓ ଭଞ୍ଜ ସାହିତ୍ୟ ଗବେଷକ ଭାବେ ସର୍ବତ୍ର ପରିଚିତ । ଏହା ବ୍ୟତୀତ ସେ ଜଣେ ଉଚ୍ଚକୋଟିର ଜ୍ୟୋତିର୍ବିଦ, କର୍ମକାଣ୍ଡ ବିତ୍ ଓ ସିଦ୍ଧ ପୂଜକ ଥିଲେ । ତାଙ୍କରି ସ୍ୱର୍ଗବାସପରେ ସାହିତ୍ୟସେବୀ ବା 'ଭଞ୍ଜଶ୍ରୀ' ଶ୍ରୀ ଶ୍ରୀଧର ଶତପଥୀଙ୍କୁ ଜାଣିବା ପାଇଁ ଆମ ନିକଟରେ ପ୍ରମାଣର ଅଭାବ ନାହିଁ । କିନ୍ତୁ କେବଳ ଘୁମୁସରର ନୁହେଁ, ସମଗ୍ର ଓଡିଶାର ଜଣେ ବିଶିଷ୍ଟ ଜ୍ୟୋତିବିଜ୍ଞାନୀ, କର୍ମ କାଣ୍ଡବିତ୍ ଓ ସାଧକଙ୍କୁ ଜାଣିବା ପାଇଁ 'ନିୟତି' ପୃଷ୍ଠାରେ ପ୍ରକାଶିତ ଅତୀତରେ ଅଳ୍ପ କେତୋଟି ଲେଖା ଏବଂ 'ସ୍ୱରୋଦୟୋକ୍ତ ଗ୍ରହଶାନ୍ତି ପଦ୍ଧତି ' ଶୀର୍ଷକ ଖଣ୍ଡିଏ ମାତ୍ର ସଂଗ୍ରହ ପୁସ୍ତକକୁ ବାଦ ଦେଲେ ଅନ୍ୟ କୌଣସି ଲିପିବଦ୍ଧ ପ୍ରମାଣ ଆମ ପାଖରେ ନାହିଁ । ସେଥିପାଇଁ ପଣ୍ଡିତଶ୍ରୀଙ୍କ ଜୀବନର ସବୁଠାରୁ ଅନନ୍ୟ ଓ ଗୌରବମୟ ଦିଗ ଯାହାକି ତାଙ୍କ ଅନ୍ତେ ସବୁ ଦିନ ପାଇଁ ଅଜ୍ଞାତ, ଅନ୍ୟଲୋଚିତ ଓ ଅବହେଳିତ ହୋଇ ରହିଯିବ, ସେହି ଦିଗଟିକୁ ଲୋକଲୋଚନକୁ ଆଣିବା ପାଇଁ ଏହି ଆଲୋଚନା ଆଜି ଅପରିହାର୍ଯ୍ୟ ମନେ ହୁଏ ।

ତା ୧୫.୯.୧୯୧୪ ରିଖ ଦିନ ଭଞ୍ଜନଗର ନିକଟସ୍ଥ ବାସୁଦେବପୁର ଶାସନରେ ପଣ୍ଡିତ ମହାଶୟଙ୍କ ଜନ୍ମ । ପିତାମହ ସାଧକ ବିଶ୍ୱନାଥ ଶତପଥୀଙ୍କ ଠାରୁ ପୂଜା, ସାଧନା ଓ କର୍ମକାଣ୍ଡ ଶିକ୍ଷା ସମାପନପରେ ଟେକ୍କାଲି ରାଜାନୁଦାନରେ ଜ୍ୟୋତିଷ ଶିକ୍ଷା ଓ ପରେ

୧୯୪୬ ମସିହାରେ ସେହି ରାଜ ଦରବାରରୁ ଜ୍ୟୋତିର୍ବିନୋଦ ଉପାଧିଲାଭ କରିଥିଲେ । ଫଳିତ ଓ ଗଣିତ ଉଭୟ ଜ୍ୟୋତିଷରେ ତାଙ୍କର ଅଗାଧ ପ୍ରବେଶ ଥିଲା । ବିଶେଷତଃ ଫଳିତ ଜ୍ୟୋତିଷରେ ସେ ବୃହତ ପରାଶର ହୋରା, ସାରାବଳୀ, ହୋରା ମକରନ୍ଦ,ବୃହ ଜାତକ, ଜ୍ୟୋତିଷ ସାର, ଜାତକଭରଣ, ଜାତକାଳଙ୍କାର,ହୋରା କୌସ୍ତୁଭ, ଭାବ କୁତୂହଳ, ଲଘୁ ପାରାବାରୀ (କେରଳ ବୟାଳିଶ), ମାନସାଗରୀ, ଲଘୁ ଜାତକ, ଚମତ୍କାର ଚିନ୍ତାମଣି, ଫଳଦୀପିକା, ଶମ୍ଭୁହୋରା ପ୍ରକାଶ, ସଂକେତ ନିଧି, ଜ୍ୟୋତିଷାର୍ଣ୍ଣବ, ସର୍ବାର୍ଥ ଚିନ୍ତାମଣି, ଜାତକ ପାରିଜାତ, ଜାତକ ତତ୍ତ୍ୱ , ଗ୍ରହ କୌତୁକ, ଜୈମିନୀ ସୂତ୍ର, ତାଜିକ ନୀଳକଣ୍ଠ, ଜ୍ୟୋତିଷ ତତ୍ତ୍ୱ କୌମୁଦୀ ପ୍ରଭୃତି ବହୁ ଗ୍ରନ୍ଥ ଅଧ୍ୟୟନ କରିଥିଲେ । ଗୁଣ ଚିହ୍ନେ ଗୁଣିଆ ନ୍ୟାୟରେ ତାଙ୍କର ଏତାଦୃଶ ବିଦ୍ୱତ୍ତାର ପରିଚୟ ମୋଭଳି ଖୁବ୍ ମୁଷ୍ଟିମେୟ ଲୋକ ହିଁ ପାଇଥିବେ । ମୁଁ କଲେଜରେ ପ୍ରାକ୍ ସ୍ନାତକ ଶ୍ରେଣୀରେ ଅଧ୍ୟୟନ କରିବା ସମୟରୁ ହିଁ ଜ୍ୟୋତିଷ ବୁଝିବା ଓ ଆଲୋଚନା କରିବାପାଇଁ ତାଙ୍କ ନିକଟକୁ ଯାଉଥାଏ । ସେ ଅବଶ୍ୟ ମୋ ପାଇଁ ଯଥା ସମ୍ଭବ ସମୟ ଦେଇଥା'ନ୍ତି । ପରବର୍ତ୍ତୀ କାଳରେ ମୁଁ ଯେତେବେଳେ ଜ୍ୟୋତିଷ, ସାମୁଦ୍ରିକ ଓ ଅଙ୍କ ଜ୍ୟୋତିଷ ପ୍ରଭୃତି ଦୈବଜ୍ଞ ବିଦ୍ୟାରେ ପାରଦର୍ଶିତା ଲାଭ କରେ, ସେତେବେଳେ ସେ ଦୀର୍ଘ ସମୟ ଧରି ମୋ ସହିତ ଶାସ୍ତ୍ରାଲୋଚନା କରିବାରେ ବିଶେଷ ଆଗ୍ରହ ପ୍ରକାଶ କରନ୍ତି । ଫଳିତ ଜ୍ୟୋତିଷର ବହୁ ଗ୍ରନ୍ଥ ଅଧ୍ୟୟନ କରିଥିବା ଯୋଗୁଁ ବିଭିନ୍ନ ଜ୍ୟୋତିଷିକ ତତ୍ତ୍ୱ ବା ତଥ୍ୟକୁ ସେ ତୁଳନାତ୍ମକ ଦୃଷ୍ଟି ଭଙ୍ଗୀରେ ବିଚାର କରିଥା'ନ୍ତି । କିନ୍ତୁ ଜାତକ ବିଚାର ବା ଫଳାଦେଶ ପରିପ୍ରେକ୍ଷୀରେ ସେ ଶାସ୍ତ୍ରୀୟ ସିଦ୍ଧାନ୍ତ ଅପେକ୍ଷା ସ୍ଥାନ, କାଳ ପାତ୍ର ଉପରେ ଅଧିକ ଗୁରୁତ୍ୱ ଦେଇଥା'ନ୍ତି । ଫଳରେ ତାଙ୍କ ବିଦ୍‌ବତ୍ତାର ଅସଲ ନିର୍ଯ୍ୟାସ ଏ କ୍ଷେତ୍ରରେ ବହୁବାର ପଥଭ୍ରଷ୍ଟ ହୋଇଥିବାର ମୁଁ ଲକ୍ଷ୍ୟ କରିଅଛି । ଏହାର ପ୍ରକୃତ କାରଣ ହେଉଛି, ଜ୍ୟୋତିଷ, କର୍ମକାଣ୍ଡ ଓ ପୂଜାସାଧନା ପାଇଁ ସେ ଯେତିକି ସାମାଜିକ ସ୍ୱୀକୃତି ବା ପ୍ରୋତ୍ସାହନ ପାଇବା କଥା ତାହା ସେ ଜୀବଦଶାରେ ପାଇ ନଥିଲେ । ସେ ଅନେକଥର କହିଛନ୍ତି,''ଜ୍ୟୋତିଷ, କର୍ମକାଣ୍ଡ, ପୂଜାଉପସନା, ଯଜମାନୀ ଇତ୍ୟାଦିରେ ଅସମ୍ଭବ ଦକ୍ଷତା ଲାଭ କରି ମଧ୍ୟ ପେଟଅପୋଷା ରହିବା ଯୋଗୁଁ ବୁଢା ବୟସରେ ସାହିତ୍ୟ ସେବାକରି ପେଟ ପୋଷିବା ପାଇଁ ଚେଷ୍ଟା କରୁଛି ''। (ବିଳମ୍ବରେ ହେଲେ ମଧ୍ୟ ସେ ସାହିତ୍ୟିକ ଭତ୍ତା ପାଇଥିଲେ ।)

ତଥାପି ଜ୍ୟୋତିଷ ଚର୍ଚ୍ଚା ବା ଏଷଣା ଠାରୁ ସେ ଦୂରେଇ ଯାଇ ନଥିଲେ । ଉପଯୁକ୍ତ ପାତ୍ର ଓ ପରିବେଶକୁ ନେଇ ସେ ଖୁବ୍ ଜଟିଳ ଓ ବିବାଦୀୟ ସମସ୍ୟା ସମ୍ପର୍କରେ ମଧ୍ୟ

ଅଭ୍ରାନ୍ତ ଫଳାଦେଶ କରିଥାନ୍ତି । ପୁଅ ହେବ ନା ଝିଅ ହେବ ଏହା ସମସ୍ତଙ୍କ ପକ୍ଷେ ଏକ ସାଧାରଣ ପ୍ରଶ୍ନ ହେଲେ ହେଁ ଜାତକ ଗଣନା କରି ଏ ପ୍ରଶ୍ନର ନିର୍ଭୁଲ ଉତ୍ତର ଦେବା ସହଜ ନୁହେଁ । ସେଥି ପାଇଁ ରାଜଜ୍ୟୋତିଷ ରାଜାଙ୍କୁ ପୁଅ ଓ ରାଣୀଙ୍କୁ ଝିଅହେବ କହି ନିଜକୁ ରକ୍ଷା କରୁଥିଲେ । ଏପରିକି ତତ୍‌କାଳିନ ଗଣନାରେ ଅଦ୍ୱିତୀୟ ଜ୍ୟୋତିଷୀ ଜ୍ୟୋତିଷ ମାର୍ତ୍ତଣ୍ଡ କୃଷ୍ଣମୂର୍ତ୍ତି ମଧ୍ୟ ଏ ସଂପର୍କରେ ଫଳାଦେଶ ନ କରିବା ପାଇଁ ଉପଦେଶ ଦେଇଛନ୍ତି । କିନ୍ତୁ ଆଲୋଚ୍ୟ ପଣ୍ଡିତଜୀ ଏଭଳି ବିବାଦୀୟ ପ୍ରଶ୍ନର ନିର୍ଭୁଲ ଫଳାଦେଶ କରିବାରେ ଅସଫଳ ହେବାରେ ମୁଁ କେବେ ଲକ୍ଷ୍ୟ କରିନାହିଁ । ମକଦ୍ଦମା କିମ୍ୱା ନିର୍ବାଚନରେ ଜିଣିବା ହାରିବା ପ୍ରସଙ୍ଗରେ ସେ ଅବଲୀଳା କ୍ରମେ ଫଳାଦେଶ କରୁଥିଲେ ।

ସେ ଏକାଧାରରେ ଜଣେ ଜ୍ୟୋତିର୍ବିଦ, କର୍ମକାଣ୍ଡୀ, ସିଦ୍ଧପୂଜକ ଥିବା ଯୋଗୁଁ ବିବାହ,ବ୍ରତ, ହୋମ, ଯଜ୍ଞ, ଦେବାଳୟ,ଗୃହ, କୂପ, ଜଳାଶୟାଦି ପ୍ରତିଷ୍ଠା ଠାରୁ ଆରମ୍ଭ କରି ଗ୍ରହଶାନ୍ତି ପୂଜା, ରୁଦ୍ରାଭିଷେକ, ଚଣ୍ଡୀପାଠ, ମହାପୂଜା ଓ ଦଶମହାବିଦ୍ୟା ପୂଜା ଏବଂ ପ୍ରୟୋଗ ପ୍ରଭୃତିରେ ଅତ୍ୟନ୍ତ ଦକ୍ଷ ଥିଲେ । ବହୁ ବଳିଷ୍ଠ ଓ ପଦସ୍ଥ ବ୍ୟକ୍ତିଙ୍କ ପାଇଁ ଅନେକ ପୂଜା ଓ ପ୍ରୟୋଗ ମୁଁ ତାଙ୍କ ଦ୍ୱାରା କରାଇଅଛି । ଜଣେ ସିଦ୍ଧି ସାଧକ ଓ ଉଚ୍ଚ କୋଟିର ପୂଜକ ନ ହେଲେ ଦଶ ମହାବିଦ୍ୟା ପୂଜା ବା ପ୍ରୟୋଗ ସଫଳ ଭାବେ କରିବା ସହଜ ନୁହେଁ । ବଡ ଆଶ୍ଚର୍ଯ୍ୟର କଥା, ତାଙ୍କ ଦ୍ୱାରା କରାଯାଇଥିବା କୌଣସି ପୂଜା ବା ପ୍ରୟୋଗ ମୁଁ ଜାଣିବାରେ କେବେ ବିଫଳ ହୋଇ ନାହିଁ । ଅବଶ୍ୟ ଅସାଧ୍ୟ ଓ ଜଟିଳ ପ୍ରୟୋଗର ନିଦାନ କ୍ଷେତ୍ରରେ ସେ ବହୁବାର ମୋ ସହିତ ପରାମର୍ଶ କରିଛନ୍ତି । ତନ୍ତ୍ରପୂଜା ଓ ପ୍ରୟୋଗ ପାଇଁ ପଣ୍ଡିତଜୀଙ୍କ ଠାରୁ ଅଧିକ ମାନ୍ୟତା ପ୍ରାପ୍ତ ସାଧକ ଓ ପୂଜକଙ୍କ ବ୍ୟକ୍ତିଗତ ସଂସ୍ପର୍ଶରେ ମୁଁ ବହୁବାର ଆସିଛି । ଏମାନଙ୍କ ମଧ୍ୟରୁ ଅନେକ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, କେନ୍ଦ୍ର ମନ୍ତ୍ରୀ କିମ୍ୱା ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ପାଇଁ ପୂଜା ପାଠ କିମ୍ୱା ପ୍ରୟୋଗ କରୁଥିବା ବିଷୟ ମୁଁ ଭଲ ଭାବେ ଜାଣେ । କିନ୍ତୁ ବାଣପୁରର ୰ ବାସୁଦେବ ମହାପାତ୍ରଙ୍କୁ ବାଦ ଦେଲେ ଅନ୍ୟ କୌଣସି ପୂଜକ ବା ସାଧକ ପଣ୍ଡିତଜୀଙ୍କ ଭଳି ଆଶୁଫଳ ପ୍ରାପ୍ତିର ଅଧିକାରୀ ହୋଇ ଥିବାର ମୁଁ ଲକ୍ଷ୍ୟ କରିନାହିଁ । ଆତ୍ମ -ସଂଗୋପନ ପ୍ରିୟ ସତ୍ୟନିଷ୍ଠ ଓ ଧର୍ମପ୍ରାଣ ୰ ବାସୁଦେବ ମହାପାତ୍ରଙ୍କ ତନ୍ତ୍ର ସାଧନାର ବିକଳ୍ପ ନାହିଁ । ମୋର ଦୀକ୍ଷାଗୁରୁ ପଣ୍ଡିତ ଶ୍ରୀ ତ୍ରିଲୋଚନ ଶତପଥୀ ଶର୍ମା ଓଡିଶାର ଜଣେ ଅଦ୍ୱିତୀୟ ବଗଳା ସାଧକ । ଗୁରୁଜୀଙ୍କ ପୂଜା ନିଷ୍ଠା ଓ ନୈପୁଣ୍ୟ ପଣ୍ଡିତଜୀଙ୍କ ଠାରୁ ଯଥେଷ୍ଟ ଉଚ୍ଚମାନର ହେଲେ ହେଁ ଫଳପ୍ରାପ୍ତି କ୍ଷେତ୍ରରେ ବହୁ ତାରତମ୍ୟ ମୁଁ ଲକ୍ଷ୍ୟ କରଅଛି । ପଣ୍ଡିତଜୀ ଅବଶ୍ୟ ଗୁରୁଜୀଙ୍କୁ ତାଙ୍କ ଠାରୁ ବରିଷ୍ଠ ବୋଲି

ସ୍ୱୀକାର କରୁଥିଲେ । ସାଧନା ଅପେକ୍ଷା ସଠିକ୍ ନିଦାନ ଓ ନିର୍ଭୁଲ ମନ୍ତ୍ରୋଚ୍ଚାରଣ ଥିଲା ପଣ୍ଡିତଜୀଙ୍କ ସଫଳତାର ଅସଲସୂତ୍ର । ପଣ୍ଡିତଜୀଙ୍କ ଜ୍ୟୋତିଷ, ସାହିତ୍ୟ ଓ ବ୍ୟାକରଣ ଜ୍ଞାନ ତାଙ୍କୁ ଏ ଦିଗରେ ଯଥେଷ୍ଟ ସାହାଯ୍ୟ କରୁଥିଲା । ମନ୍ତ୍ର ବା ସ୍ତୋତ୍ର ଉଚ୍ଚାରଣ ସମୟରେ ସେ ଛନ୍ଦ ସ୍ୱର ଲୟାଦିର ନିର୍ଭୁଲ ଅନୁସରଣ କରୁଥିଲେ । ଏହା ବ୍ୟତୀତ ଗ୍ରହାନୁଗ୍ରହ ତାଙ୍କ ପାଇଁ ଅନୁକୂଳ ଥିଲା । ଦଶ ମହାବିଦ୍ୟା ମଧ୍ୟରୁ ଛିନ୍ନ ମସ୍ତା ସାଧନା ଓ ପ୍ରୟୋଗ ଏକ ଅସାଧ ବ୍ୟାପାର । ତେବେ ପଣ୍ଡିତଜୀ ଏ ପୂଜା ଓ ପ୍ରୟୋଗ ଅତି ସଫଳତାର ସହିତ କରୁଥିଲେ । ଏଥି ଦ୍ୱାରା ସେ ବହୁ ଲୋକଙ୍କୁ ବହୁ ବିପଦରୁ ରକ୍ଷା କରିଛନ୍ତି । ଥରେ ଭଞ୍ଜନଗରର ଠାକୁରାଣୀ ମନ୍ଦିରରେ ତ୍ରିପୁରା ଓ ଛିନ୍ନମସ୍ତାଙ୍କ ପୂଜା ଚାଲିଥାଏ । ପୂଜାନ୍ତେ ରାହୁ ମହାଗ୍ରହଙ୍କ ଦୋଷ ଖଣ୍ଡନ ପାଇଁ ଲୌହ ତୈଳ ଦାନ ପ୍ରାୟାଶ୍ଚିତ୍ତ ବିଧାନର ବ୍ୟବସ୍ଥା ମଧ୍ୟ ରହିଛି; ଅଥଚ ପୂଜାଶେଷ ପର୍ଯ୍ୟନ୍ତ ଦାନ ଗ୍ରହିତା ଠିକ୍ ହୋଇ ନାହିଁ । ଅବସର ଦେଖି ପଣ୍ଡିତଜୀଙ୍କୁ ମୁଁ ବାରମ୍ବାର ପଚାରିଛି,'' ଉପଯୁକ୍ତ ଦାନ ଗ୍ରହିତା ଠିକ୍ ହୋଇ ନାହିଁ କ'ଣ କରାଯିବ ? ସେ ହସି ହସି ଉତ୍ତର ଦେଇଛନ୍ତି,''ପୂର୍ଣ୍ଣାହୁତି ବେଳକୁ ଦାନ ଗ୍ରହଣ କରିବା ଲୋକ ଆପେ ଆପେ ଆସିଯିବ ।'' ସତକୁ ସତ ଏକ କନ୍ଧା ଓ ଭୋକିଲା ବ୍ରାହ୍ମଣ ପୂର୍ଣ୍ଣାହୁତିର ଠିକ୍ ଅବ୍ୟବହିତ ପୂର୍ବରୁ ସେଠାରେ ପହଞ୍ଚି ଅତି କରୁଣ ଭାବେ ଖାଇବାକୁ ମାଗିଛି । ପଣ୍ଡିତଜୀ ସଙ୍ଗେ ସଙ୍ଗେ କହିଛନ୍ତି, 'ରାହୁ ମହାଗ୍ରହଙ୍କ ପ୍ରତିନିଧି ଆସି ଗଲେ ତାଙ୍କୁ ଭଲ ଭାବେ ଉଦ୍ଦିଷ୍ଟ ପଦାର୍ଥ ଖାଇବାକୁ ଦିଅ, ତା' ସହିତ ଦାନ ଓ ଯଥାଶକ୍ତି ଦକ୍ଷିଣା ମଧ୍ୟ ଦିଅ ।''ଭୋକିଲା ବ୍ରାହ୍ମଣ ଜଣକ ଉଦ୍ଦିଷ୍ଟ ପଦାର୍ଥ ଅତ୍ୟନ୍ତ ପରି ତୃପ୍ତିର ସହ ଭୋଜନ କରି ଉଦ୍ଦିଷ୍ଟ ଦାନ ଏବଂ ମାତ୍ର ପାଞ୍ଚଟଙ୍କା ଦକ୍ଷିଣା ଅତ୍ୟନ୍ତ ଆଗ୍ରହର ସହ ଗ୍ରହଣ କରି ପୂଜାପୀଠରୁ ତତ୍କ୍ଷଣାତ୍ ବିଦାୟ ନେଲେ । ଏହି ଅଦ୍ଭୁତ ଘଟଣା, ଦେଖିବା ଜାଣି ନଥିବା ଲୋକଙ୍କ ପାଇଁ ଏକ କିମ୍ବଦନ୍ତୀ ହୋଇପାରେ; କିନ୍ତୁ ଏତାଦୃଶ୍ୟ ଏକାଧିକ ଘଟଣାର ମୁଁ ପ୍ରତ୍ୟକ୍ଷଦର୍ଶୀ । ମୋର ନିର୍ଭୁଲ ଗଣନା,ଫଳାଦେଶ ଓ ସଠିକ ପ୍ରୟୋଗ ନିଦାନ ପାଇଁ ସେ ମୋତେ ପୁତ୍ରବତ୍ ସ୍ନେହ ଓ ଆଦର କରୁଥିଲେ । ଜ୍ୟୋତିଷ ଚର୍ଚ୍ଚା ଓ ବିତର୍କ ଅବସରରେ ତାଙ୍କର କିଛି ବ୍ୟତିକ୍ରମ ଅଥବା ଭ୍ରମପ୍ରମାଦ ମୁଁ ଠିକ୍ ସମୟରେ ସୂଚାଇ ଦେଇଥାଏ । ଏଥିରେ ସେ ବିରକ୍ତି ହେବା ପରିବର୍ତ୍ତେ ଆନନ୍ଦ ଅନୁଭବ କରିଥାନ୍ତି । ଏଥିରୁ ଜଣାଯାଏ, ତାଙ୍କର ଜ୍ଞାନ ଆହରଣ ଓ ଅନୁସନ୍ଧାନ ପ୍ରବୃତ୍ତି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଅବ୍ୟାହତ ଥିଲା । ଏହା ବ୍ୟତୀତ ସେ ଜଣେ ଉଚ୍ଚ କୋଟିର ଗୁରୁ ଓ ପଥପ୍ରଦର୍ଶକ ଥିଲେ । କାରଣ ସେ ତାଙ୍କଠାରୁ ଅଧିକ ଦକ୍ଷ ଶିଷ୍ୟ ପ୍ରତି ଅସହିଷ୍ଣୁ ନହୋଇ ସର୍ବଦା ସ୍ନେହ ଓ ଆଶିଷ

ବିତରଣ କରି ଆସୁଥିଲେ । ତେଣୁ ମୋ ଦୃଷ୍ଟିରେ ପଣ୍ଡିତ ଶ୍ରୀ ଶ୍ରୀଧର ଶତପଥୀ ଜଣେ ବ୍ୟକ୍ତି ବିଶେଷ ନୁହନ୍ତି, ସେ ପ୍ରାଚ୍ୟସିଦ୍ଧି ଓ ସାଧନାର ଏକ ନିର୍ଭରଯୋଗ୍ୟ ଅନୁଷ୍ଠାନ ଥିଲେ ।

ପ୍ରାଧ୍ୟାପକ, ଓଡିଆ ଭାଷା ଓ ସାହିତ୍ୟ ବିଭାଗ ।
କବିସମ୍ରାଟ ଉପେନ୍ଦ୍ରଭଞ୍ଜ ମହାବିଦ୍ୟାଳୟ
ଭଞ୍ଜନଗର

*****

# -ଭଞ୍ଜ ସାହିତ୍ୟ- ଆଲୋଚକ ପଣ୍ଡିତ ଶ୍ରୀଧର ଶତପଥୀ-

ଅଧ୍ୟାପକ କମ୍ବୁପାଣି ସାମନ୍ତ

ପଣ୍ଡିତ ଶ୍ରୀଧର ଶତପଥୀ ଭଞ୍ଜ ସାହିତ୍ୟର ଜଣେ ବିଶିଷ୍ଟ ଆଲୋଚକ ଭାବରେ ଓଡିଶାରେ ସୁପରିଚିତ । ଅର୍ଦ୍ଧ ଶତାବ୍ଦୀରୁ ଉର୍ଦ୍ଧ୍ୱକାଳଧରି ଭଞ୍ଜ ସାହିତ୍ୟର ସଂଗ୍ରହ, ସଂପାଦନା, ସମାଲୋଚନା ଓ ପ୍ରଚାର କାର୍ଯ୍ୟରେ ସେ ନିୟୋଜିତ ରହିଥିଲେ । ବିଭିନ୍ନ ସ୍ଥାନରୁ ତାଳପତ୍ର ପୋଥି ସଂଗ୍ରହକରି ଭଞ୍ଜବଂଶ ସଂପର୍କରେ ସେ ବହୁ ତଥ୍ୟ ଆବିଷ୍କାର କରିବା ସହିତ କେତୋଟି ଭଞ୍ଜ-ରଚନାକୁ ଉଦ୍ଧାର କରିଛନ୍ତି । ତାଳପତ୍ର ପୋଥିରୁ ସଂଗୃହୀତ ତଥ୍ୟ ଭିତ୍ତିରେ ଭଞ୍ଜବଂଶାବଳୀ ଏବଂ ଭଞ୍ଜ ସାହିତ୍ୟର ଆଲୋଚନା କାଳରେ ଏ ସମ୍ବନ୍ଧରେ ପ୍ରଚଳିତ ଜନଶ୍ରୁତିର ସହାୟତା ମଧ୍ୟ ନେଇଛନ୍ତି । ଓଡିଶାରେ ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ଭଞ୍ଜଜୟନ୍ତୀ ଉତ୍ସବରେ ବକ୍ତା ଭାବରେ ଯୋଗଦେବାପାଇଁ ତାଙ୍କ ନିକଟକୁ ବହୁ ଅନୁରୋଧ ଆସୁଥାଏ । ଏଗୁଡିକରେ ଭଞ୍ଜସାହିତ୍ୟର ମହତ୍ତ୍ୱ ଉଦ୍‌ଘାଟନ କରି, କେବଳ ଭଞ୍ଜସାହିତ୍ୟ କାହିଁକି, ସାମଗ୍ରିକ ଭାବେ ସାହିତ୍ୟାନୁଶୀଳନ ପ୍ରତି ଲୋକଙ୍କ ମନରେ ସେ ଉତ୍ସାହ ଜାଗ୍ରତ କରାଇ ଅନେକଙ୍କର ପ୍ରଶଂସାଭାଜନ ହୋଇପାରିଛନ୍ତି । ସଂସ୍କୃତ ଭାଷା ସାହିତ୍ୟ ଓ ଜ୍ୟୋତିର୍ବିଦ୍ୟାରେ ସେ ଜଣେ ବିଦ୍ୱାନ ବ୍ୟକ୍ତି । ସଂସ୍କୃତ କାବ୍ୟ-ଅଳଙ୍କାର ଦୃଷ୍ଟିରୁ ଭଞ୍ଜସାହିତ୍ୟର ତୁଳନାତ୍ମକ ଉପସ୍ଥାପନ ତାଙ୍କ ବକ୍ତୃ-ଶୈଳୀର ଏକ ବିଶେଷତ୍ୱ । ଗମ୍ଭୀର ଅଥଚ ସରଳ, ନମ୍ର କିନ୍ତୁ ଯୁକ୍ତିନିଷ୍ଠ ଭଙ୍ଗୀରେ ଭଞ୍ଜସାହିତ୍ୟ ଆଲୋଚନା କରି ଶ୍ରୋତାମାନଙ୍କୁ ସେ ପ୍ରଭାବିତ କରିପାରୁଥିଲେ । ଉପେନ୍ଦ୍ର ଭଞ୍ଜଙ୍କ ମତରେ ଜ୍ଞାନ-ଗଭୀରତା ହେଉଛି ପଣ୍ଡିତ ଲୋକର ପ୍ରଧାନ ଲକ୍ଷଣ । (''ଗଭୀର ପଣକୁ ପଣ୍ଡିତଠାରୁ ଗୃହୀତ କରି''- ଲାବଣ୍ୟବତୀ, ଷଷ୍ଠଛାନ୍ଦ) ଶ୍ରୀଧର ଶତପଥୀ ହେଉଛନ୍ତି ସେଇ ବିଚାରରେ ଜଣେ ଗଭୀର ଜ୍ଞାନ-ପୁଷ୍ଟ ପଣ୍ଡିତ । ତେଣୁ ତାଙ୍କର ସମ୍ଭାଷଣରେ ପ୍ରଦର୍ଶନ-ପ୍ରବୀଣ ପାଣ୍ଡିତ୍ୟର ଉତ୍ତାଳ ତରଙ୍ଗ ନଥାଏ, ଥାଏ ଗଭୀରତା ।ଶ୍ରୋତୃବର୍ଗ ବଡ ଆତ୍ମୀୟ ଢଙ୍ଗରେ, ଆସ୍ତେ ଆସ୍ତେ ସେଇ ଗଭୀରତାକୁ ଅନୁଭବ କରିଥାଆନ୍ତି । ଭାଷଣର ଏଇ ଜ୍ଞାନ-ଗର୍ଭକଥନ ଶୈଳୀ ତାଙ୍କ ଲେଖାମାନଙ୍କରେ ଅବିକଳ ଅନୁସୃତ । ପଣ୍ଡିତ ଶତପଥୀ ଭଞ୍ଜ ସାହିତ୍ୟ ସଂପର୍କରେ ଯେଉଁସବୁ ଆଲୋଚନାମାନ ଆମକୁ ଉପହାର ଦେଇଯାଇଛନ୍ତି, ସେଗୁଡିକୁ

ଅନୁଧ୍ୟାନ କଲେ, ତାଙ୍କର ବ୍ୟକ୍ତିସତ୍ତା ଯେ ଓତଃପ୍ରୋତଃ ଭାବେ ଭଞ୍ଜଙ୍କ ଜୀବନୀ ଓ ସାହିତ୍ୟ ଅନୁଶୀଳନରେ ନିମଜ୍ଜିତ- ଏକଥା ଜାଣିହୁଏ ।

ଏଇଠି ଗୋଟିଏ କଥା ମନେରଖିବାକୁ ହେବ ଯେ, ପଣ୍ଡିତ ଶତପଥୀ ତାଙ୍କ ରଚନାମାନଙ୍କରେ ଭଞ୍ଜ ସାହିତ୍ୟର ଜଣେ ବିଶ୍ୱସ୍ତ ପାଠକ ଭାବରେ ନିଜକୁ ଉପସ୍ଥାପିତ କରିଥାଆନ୍ତି । ଭଞ୍ଜ ସାହିତ୍ୟ ସମାଲୋଚନାର ଶତାବ୍ଦୀ ବ୍ୟାପୀ ଧାରାକୁ ସିଂହାବଲୋକନ କଲେ ଲକ୍ଷ୍ୟ କରିହେବ - କେଉଁଠି ଉଦ୍ଦେଶ୍ୟ ପ୍ରଣୋଦିତ ଆଲୋଚନା ହେତୁ ଏକଦେଶ ଦର୍ଶିତାର ହରିକାଠରେ ଉପେନ୍ଦ୍ର ଭଞ୍ଜ ଛଟପଟ ହେଉଛନ୍ତି । କେତେକ କ୍ଷେତ୍ରରେ ଭଞ୍ଜ ସାହିତ୍ୟ-ସୌନ୍ଦର୍ଯ୍ୟ ଉଦ୍‌ଘାଟନ ଆଳରେ ଆଲୋଚକମାନେ ସ୍ୱପାଣ୍ଡିତ୍ୟର ପ୍ରଦର୍ଶନ - ପ୍ରବଣତାକୁ ଚରିତାର୍ଥ କରିଥାଆନ୍ତି । ଏଥିରେ ଆଲୋଚକର ପାଣ୍ଡିତ୍ୟ-ପ୍ରକର୍ଷର ମେଘାଡମ୍ବରରେ ଭଞ୍ଜ ସାହିତ୍ୟର ସ୍ନିଗଧ ଜ୍ୟୋତ୍ସ୍ନା ଆଚ୍ଛାଦିତ ଅଥବା ଗୌଣତା ପ୍ରାପ୍ତ ହୋଇଯାଇଛି । କିନ୍ତୁ ପଣ୍ଡିତ ଶତପଥୀ ଏସବୁ ଦ୍ୱାରା ଅପ୍ରଭାବିତ ରହିଛନ୍ତି । ପ୍ରାଚ୍ୟ ସାହିତ୍ୟ ଶାସ୍ତ୍ର ସମ୍ମତ ସମୀକ୍ଷାରୀତିର ଅନୁସରଣରେ ସେ ଭଞ୍ଜ ସାହିତ୍ୟର ବ୍ୟାଖ୍ୟା କରିଛନ୍ତି । ସ୍ଥଳ ବିଶେଷରେ ମନେହୁଏ - ସତେ ଯେମିତି ପ୍ରଥମ କରି ଭଞ୍ଜଙ୍କୁ ସେ ଆମ ଆଗରେ ପରିଚିତ କରାଇଛନ୍ତି । ବହିତ୍ର- ୩,୪, ୭,୯ ଓ ୧୦ ସଂଖ୍ୟାରେ ତାଙ୍କର ପ୍ରକାଶିତ ପ୍ରବନ୍ଧ, ଯଥାକ୍ରମେ, 'ଲାବଣ୍ୟବତୀ','ବୈଦେହୀଶ ବିଳାସ' - ଏକ ଅଧ୍ୟୟନ,'ସୁଭଦ୍ରା ପରିଣୟ' , 'ରସଲେଖା ପରିଚୟ', 'ଛାନ୍ଦ ଭୂଷଣ' ଆଦିକୁ ଲକ୍ଷ୍ୟକଲେ ପଣ୍ଡୀତଜୀଙ୍କର ପ୍ରାରମ୍ଭିକ ପ୍ରୟାସ-ଚେତନାକୁ ଜାଣି ହୁଏ । ସେହିଭଳି ବହିତ୍ର-୧ ରେ ପ୍ରକାଶିତ ପ୍ରବନ୍ଧ 'ଭଞ୍ଜ ସାହିତ୍ୟରୁ ଦର୍ଶନର ଆସ୍ୱାଦନ' ତାଙ୍କର ନୂତନ ଦୃଷ୍ଟିଭଙ୍ଗୀକୁ ସୂଚାଏ । ଏହି ଦୁଇଧରଣର ପ୍ରବନ୍ଧ ରଚନା କରି ପଣ୍ଡିତ ଶତପଥୀ ଯେମିତି ସଂକେତ କରିଛନ୍ତି - ଭଞ୍ଜ ସାହିତ୍ୟର ଅନୁଶୀଳନ ଓ ରସସ୍ୱାଦନ ପାଇଁ ମୁଗ୍ଧଚୈତନ୍ୟ ଓ ମଗ୍ନ- ଚୈତନ୍ୟ- ଏ ଉଭୟ ଚୈତ୍ତିକ ସ୍ଥିତିର ଉପଯୋଗ ଆବଶ୍ୟକ ।

ପଣ୍ଡିତ ଶ୍ରୀଧର ଶତପଥୀ ବହୁ ଆୟାସ ପୂର୍ବକ ତାଳପତ୍ର ପୋଥି ସଂଗ୍ରହ ଓ ଭଞ୍ଜଙ୍କ ରଚନାମାନ ଉଦ୍ଧାର କରିଛନ୍ତି । ଶୋଭାବତୀ ଓ ଚନ୍ଦ୍ରଲେଖା କାବ୍ୟର ଦୁଇଟି ଲେଖାଏ ଛାନ୍ଦ ପ୍ରାପ୍ତ ହେବାମାତ୍ରେ ସେଗୁଡିକୁ ପ୍ରକାଶ କରାଇ ଭଞ୍ଜପ୍ରେମୀ ଅନୁସନ୍ଧିତ୍ସୁମାନଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି । 'ରାଜକବି ଧନଞ୍ଜୟ ଭଞ୍ଜ' ପୁସ୍ତକ ପ୍ରଣୟନ କରି ଭଞ୍ଜ-ପ୍ରତିଭାର ପ୍ରେରଣା-ଭୂମିକୁ ସେ ଲୋକ ଲୋଚନକୁ ଆଣିବାପରେ ଭଞ୍ଜଙ୍କର ବିସ୍ତୃତ ପରିଚୟାତ୍ମକ ଏକାଧିକ ଗ୍ରନ୍ଥ ରଚନାକରିଛନ୍ତି। 'ଅମର ସନ୍ତାନ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ' ଗ୍ରନ୍ଥରେ କବି ଜୀବନୀ ଏବଂ ପ୍ରତିଭା ସମ୍ପର୍କରେ ବିସ୍ତୃତ ଆଲୋଚନା

କରାଯାଇଛନ୍ତି । ଅଳଙ୍କାର ଶାସ୍ତ୍ରର ବିଭିନ୍ନ ପ୍ରତିପାଦ୍ୟ ବିଷୟ ଆଧାରରେ ଭଞ୍ଜ କବିତାର ସ୍ୱରୂପ ବିଚାର ଏହି ଗ୍ରନ୍ଥର ପ୍ରମୁଖ ଆକର୍ଷଣ । 'ଭଞ୍ଜ ସନ୍ଦର୍ଭ' ପଣ୍ଡିତ ଶତପଥୀଙ୍କର ନିରବଚ୍ଛିନ୍ନ ଭଞ୍ଜ ସାହିତ୍ୟ ଅନୁଶୀଳନ ଏବଂ ଜନଶ୍ରୁତି ସହାୟତାରେ ଏହି ଉଭୟ ଗ୍ରନ୍ଥରେ ଭଞ୍ଜବଂଶ ଓ ଉପେନ୍ଦ୍ର ଭଞ୍ଜଙ୍କ କବି-ଜୀବନୀର ପୁନର୍ଗଠନ କରିଛନ୍ତି । ଏଥିରେ ସନ୍ନିବେଶିତ ତଥ୍ୟମାନଙ୍କ ଭିତରୁ ଅନେକ ଅଧିକ ପ୍ରମାଣ-ସାପେକ୍ଷ । ଓଡିଶାର ସୁଧୀବର୍ଗ ଏହିକାର୍ଯ୍ୟରେ ଅଗ୍ରସର ନହେଲେ ଗ୍ରନ୍ଥଦ୍ୱୟରେ ପଣ୍ଡିତଜୀଙ୍କର ପରିବେଶିତ ଅନେକ ତଥ୍ୟ ଉପନ୍ୟାସଭଳି ବୋଧ ହେବାରେ ଆଶ୍ଚର୍ଯ୍ୟ କିଛି ନାହିଁ । ଭଞ୍ଜ ସନ୍ଦର୍ଭ ଗ୍ରନ୍ଥରେ ଉପେନ୍ଦ୍ରଭଞ୍ଜଙ୍କ କବିତ୍ୱ-କୀର୍ତ୍ତୀ-ବିସ୍ତାର, ତିନିସଙ୍ଗୀଙ୍କ ଭୂମିକା, ଦେଶାଟନ ଇତ୍ୟାଦି ସମ୍ପର୍କରେ ଯେଉଁ ସୁଖପାଠ୍ୟ ଦୀର୍ଘ ବିବରଣୀ ପ୍ରଦତ୍ତ, ତାହାର ରଚନା-ଚାରୁତା ପାଠକକୁ ଆତ୍ମହରା କରେ । ଐତିହାସିକ ସତ୍ୟାନୁସନ୍ଧାନକୁ ବିସ୍ମୃତ ହୋଇ ପାଠକ ଉପନ୍ୟାସ-ସୁଲଭ ଭାବାବେଶ-ନିମଜ୍ଜିତ ହୁଏ । ଏହାହିଁ ପଣ୍ଡିତ ଶତପଥିଙ୍କ ଆଲୋଚନାର ଉତ୍କର୍ଷ-ପରିଚାୟକ । ଅଧିକାଂଶ କ୍ଷେତ୍ରରେ ଭଞ୍ଜ କବିଙ୍କୁ ତାଙ୍କ କାବ୍ୟ ଭିତରୁ ହିଁ ଖୋଜିବା ପାଇଁ ସେ ପ୍ରୟାସ କରିଛନ୍ତି । ଏ ଉଦ୍ୟମ ନିଶ୍ଚିନ୍ତ ଭାବେ ପ୍ରଶଂସାର୍ହ । କାଳିଦାସ,ବାଣଭଟ୍ଟ ଇତ୍ୟାଦି ମହାକବିଙ୍କ ଜୀବନୀ ଓ ସମୟକୁ ସେମାନଙ୍କ କାବ୍ୟରେ ଥିବା ମହାକବିଙ୍କ ଜୀବନୀ ଓ ସମୟକୁ ସେମାନଙ୍କ କାବ୍ୟରେ ଥିବା ଉପାଦାନ ଭିତ୍ତିରେ ପୁନର୍ଗଠନ କରିବାର ଯେଉଁ ଅଭିନବ ପ୍ରୟାସ ସର୍ବଭାରତୀୟ ସ୍ତରରେ ଜନସମାଦର ଲାଭ କରିଛି, ପଣ୍ଡିତ ଶତପଥିଙ୍କ ଭଞ୍ଜ ସନ୍ଦର୍ଭ ସେଇ ଧରଣର ଏକ ପ୍ରସିଦ୍ଧ ରଚନା ।

''ଉପେନ୍ଦ୍ର ଭଞ୍ଜ ରଜାପୁଅ ତେଣୁ ବିଳାସ ନିମଜ୍ଜିତ ରହି କେବଳ ପ୍ରମୋଦ-କବିତା ରଚନା କରିଛନ୍ତି''- ଏମିତି ଧାଡିଏ ସମ୍ଭାବନାକୁ ଦୃଢମୂଳ କରି, ପରେ ପରେ ତାକୁ ପଲ୍ଲବିତ କରିଦିଆଯାଇଛି, ସେହି ଦୃଷ୍ଟିରୁ ହିଁ ଭଞ୍ଜକାବ୍ୟର ବିଚାର- ପ୍ରବୃତ୍ତ ହୋଇଥିବା ଆଲୋଚକଙ୍କ ସଂଖ୍ୟା କିଛି କମ୍ ନୁହେଁ । ଏମାନେ ଏଯାବତ ଭଞ୍ଜକବିଙ୍କ ପ୍ରତି ଯେଉଁ ଅନ୍ୟାୟ କରି ଆସିଥିଲେ, ପଣ୍ଡିତଜୀଙ୍କର ଅନୁଶୀଳନ ଫଳରେ ତା'ର ଅସାରତା ସ୍ୱତଃ ପ୍ରତିପାଦିତ ହୋଇଛି । ପୂର୍ବବର୍ତ୍ତୀ କୌଣସି ଆଲୋଚକଙ୍କୁ ଅଙ୍ଗୁଳି ନିର୍ଦ୍ଦେଶ ନକରି ଆପଣା ଢଙ୍ଗରେ ସେ ଭଞ୍ଜଙ୍କୁ ଉପସ୍ଥାପନ କରିଛନ୍ତି । ଭଞ୍ଜଙ୍କ ଉପରେ ଆପଣାମନଗଢା ସିଦ୍ଧାନ୍ତମାନ ଆରୋପକରି ଯେଉଁମାନେ ତାଙ୍କୁ ଓ ତାଙ୍କ ସାହିତ୍ୟକୁ ତାସଲ୍ୟ କରୁଥିଲେ, ସେମାନଙ୍କୁ ପଣ୍ଡିତ ଶତପଥୀଙ୍କ ଏ ଗ୍ରନ୍ଥଟି ଗୋଲକ ଧନ୍ଦାରେ ପକାଇବ । ପୁଣି , ଯେଉଁମାନେ ଅନୁସନ୍ଧିତ୍ସୁ, ସେମାନଙ୍କୁ ଅଧିକ ଗବେଷଣା ନିମନ୍ତେ ଏ ଗ୍ରନ୍ଥ ପ୍ରେରଣା ମଧ୍ୟ ଯୋଗାଇବ ।

ସଂସ୍କୃତ କାବ୍ୟ ସାହିତ୍ୟର ବିଭିନ୍ନ ଆଙ୍ଗିକ ଓ ଆତ୍ମିକ ଉପାଦାନମାନଙ୍କ ସହିତ ଭଞ୍ଜକାବ୍ୟର ସାମଞ୍ଜସ୍ୟ ପ୍ରଦର୍ଶନ ପଣ୍ଡିତଙ୍କର ଆଲୋଚନାର ଅନ୍ୟତମ ଆକର୍ଷଣ । ତେବେ, 'ଭଞ୍ଜ ସାହିତ୍ୟ ହେଉଛି ସଂସ୍କୃତିର ପ୍ରତିନିଧି ମାତ୍ର'- ଏହା ସେ ପ୍ରମାଣ କରିଛନ୍ତି କାଲି କେହି ଯେମିତି ମନେ ନକରନ୍ତି । ଭାଷା-କାବ୍ୟ- ବିମୁଖ ଏବଂ ସଂସ୍କୃତ-ପ୍ରଶଂସା-ଶତମୁଖ ପଣ୍ଡିତ ମାନଙ୍କୁ ନୀରବକରି ଭାଷାକାବ୍ୟ ପ୍ରତି ସେମାନଙ୍କର ଆଦର ଉତ୍ପନ୍ନ କରିବା ଲକ୍ଷରେ ହିଁ ପଣ୍ଡିତ ଶତପଥୀ ଉପେନ୍ଦ୍ରଭଞ୍ଜଙ୍କ ସମସାମୟିକ ସାହିତ୍ୟକ ପରିବେଶର ପୃଷ୍ଠଭୂମିରେ ଏହାର ପରିବେଶଣ କରିଛନ୍ତି । ତାଳପତ୍ର ପୋଥି ଏବଂ ଜନଶ୍ରୁତି ତାଙ୍କୁ ଏଦିଗରେ ଅନୁପ୍ରେରିତ କରିଛି । ଭଞ୍ଜଙ୍କ ସମ୍ପର୍କରେ ଓଡିଶାରେ ପ୍ରଚଳିତ ଅନେକ ଜନଶ୍ରୁତିକୁ ଉଦ୍ଧାର କରି ପଣ୍ଡିତ ଶତପଥୀ ସେଗୁଡିକୁ ସ୍ୱଗ୍ରନ୍ଥରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଉଲ୍ଲେଖ କରି ଆମ ଭାଷା ସାହିତ୍ୟର ମହତ ଉପକାର ସାଧନ କରିଛନ୍ତି । ଜନଶ୍ରୁତି ଗୁଡିକ କ୍ରମେ ଅବଲୁପ୍ତ ହୋଇପଡୁଥିବା ବେଳେ ଭବିଷ୍ୟତ ଉପଯୋଗ ପାଇଁ ଅନ୍ତତଃ ସେଗୁଡିକ ସଂରକ୍ଷିତ ହୋଇ ପାରିଛନ୍ତି ।

'ଭଞ୍ଜସାହିତ୍ୟରେ ପ୍ରକୃତି ଚିତ୍ର' ପୁସ୍ତକଟିରେ ପଣ୍ଡିତ ଶତପଥୀଙ୍କର ଭଞ୍ଜ ସାହିତ୍ୟ ଆଲୋଚନାର ଏକ ଭିନ୍ନ ଦିଗନ୍ତ ଉନ୍ମୋଦିତ । ବ୍ୟାପକ ଅର୍ଥରେ 'ପ୍ରକୃତି' ଶବ୍ଦର ଆଖ୍ୟା କରି, ସେଇ ଦୃଷ୍ଟିରୁ ଭଞ୍ଜଙ୍କ କାବ୍ୟ- ପ୍ରକୃତିକୁ ଏଥିରେ ବିଶ୍ଳେଷଣ କରାଯାଇଛି । ବିଭିନ୍ନ ଋତୁ ବର୍ଣ୍ଣନାରେ ପ୍ରାକୃତିକ ସୌନ୍ଦର୍ଯ୍ୟର ଚାରୁଚିତ୍ର ଭଞ୍ଜକାବ୍ୟମାନଙ୍କରେ ଯେଉଁଭଳି ରହିଛି, ପଣ୍ଡିତ ଶତପଥୀ ତାର ସୁନ୍ଦର ଉପସ୍ଥାପନା କରିଛନ୍ତି । ଷଡଋତୁର ବର୍ଣ୍ଣନା ଭଞ୍ଜଙ୍କର ଅଧିକାଂଶ କାବ୍ୟରେ ଅଛି । ଏଯାବତ୍ ଆମକୁ ଗୋଟିଏ ଧାରଣା ଦିଆଯାଉଥିଲାଯେ, ଭଞ୍ଜଙ୍କର ପ୍ରକୃତି ବର୍ଣ୍ଣନାରେ ନୂତନତା ନାହିଁ । ସବୁକାବ୍ୟରେ ବର୍ଣ୍ଣନାର ଏକରୂପତା ଏବଂ ଉପମାନର ସୀମିତ ତା ହେତୁ ବିରକ୍ତିକର । କିନ୍ତୁ ପଣ୍ଡିତ ଶ୍ରୀଧର ଶତପଥୀ ପ୍ରତ୍ୟେକ କାବ୍ୟର ବିଭିନ୍ନ ସ୍ଥଳରେ ଥିବା ଗୋଟିଏ ଗୋଟିଏ ଋତୁ ବର୍ଣ୍ଣନାକୁ ଏକାଠି କରି ତାର ଧାରାବାହିକ ଆଲୋଚନା କରଛନ୍ତି । ସେ ଦେଖାଇ ଦେଇଛନ୍ତି ଯେ, ଋତୁମାନଙ୍କର କେତୋଟି ସାଧାରଣ ଧର୍ମର ଉଲ୍ଲେଖ ବେଳେ ବିଭିନ୍ନ କାବ୍ୟଭିତରେ ଏକରୂପତା ରହିଛି , ରହିବା ସ୍ୱାଭାବିକ ମଧ୍ୟ, କିନ୍ତୁ ଋତୁର ବିଶେଷ-ଧର୍ମ-କଥନରେ କବିଙ୍କର ଅପୂର୍ବ ପ୍ରତିଭା ବିକସିତ । ଏଗୁଡିକରେ ନୂତନତା ରହିଛି ଏବଂ ପ୍ରତ୍ୟେକେ ଅନ୍ୟଠାରୁ ପୃଥକ । ପୁଣି, ଏଗୁଡିକର ସଂଯୋଜନାରେ ଏକ ଧାରାବାହିକତା ପରିଲକ୍ଷିତ । ସଂଯୋଜିତ ପ୍ରତ୍ୟେକ ଅଂଶ ଭିତରେ ହାତଧରାଧରି ସମ୍ବନ୍ଧ । ଏବଂ, ଏମାନଙ୍କୁ ଏମିତି ଶୃଙ୍ଖଳାରେ ସଜାଇ ଦିଆଯାଇଛି ଯେ, ଭିନ୍ନ ଭିନ୍ନ କାବ୍ୟର ଭିନ୍ନ ଭିନ୍ନ ବିଷୟ-ସନ୍ଧି ସହିତ ଏମାନଙ୍କର ଘନିଷ୍ଠ

ସମ୍ବନ୍ଧ ଅଛି । ଚମତ୍କାର ! ଜଣେ ମହାକବିଙ୍କର ପ୍ରକୃତିଚିତ୍ରକୁ ଠିକ୍ ଅନୁଶୀଳନ ନକରି, କେବଳ ରେଳ ଉପରୁ ଚିଲିକା ଦର୍ଶନ ଭଳି ଏହା ଉପରେ ଶୂନ୍ୟସଞ୍ଚାରୀ ସ୍ଥୂଳ ଦୃଷ୍ଟି ନିକ୍ଷେପ କରି, ଯେଉଁ ସମାଲୋଚନାତ୍ମକ ମନ୍ତବ୍ୟମାନ ପ୍ରଚଳିତ ଥିଲା, ପଣ୍ଡିତ ଶତପଥିଙ୍କ ଆଲୋଚନା ପଢ଼ିବା ପରେ ସେଗୁଡ଼ିକ ଆପଣା ଛାଏଁ ତିରୋହିତ ହୋଇଯାଆନ୍ତି । ବିର୍ତକବିହୀନ ଏବଂ ନିରପେକ୍ଷ ଅନୁଶୀଳନଦ୍ୱାରା ଭଞ୍ଜସାହିତ୍ୟର ଚାରୁତା ସଂମ୍ପାଦନ କ୍ଷେତ୍ରକୁ ଏହାହିଁ ପଣ୍ଡିତ ଶ୍ରୀଧର ଶତପଥୀଙ୍କର ସର୍ବଶ୍ରେଷ୍ଠ ଅବଦାନ ।

ପଣ୍ଡିତଠାରୁ ସାଧାରଣ ବ୍ୟକ୍ତି ପର୍ଯ୍ୟନ୍ତ ସମସ୍ତଙ୍କ ପାଖରେ ଭଞ୍ଜ ସାହିତ୍ୟର ରସ-ମାଧୁର୍ଯ୍ୟକୁ ପହଞ୍ଚାଇବାରେ ଶ୍ରୀଧର ଶତପଥୀଙ୍କ ପ୍ରଚେଷ୍ଟା ଅତୁଳନୀୟ । ଭଞ୍ଜ ସାହିତ୍ୟର ବିଶାଳ ଶୌଧରେ ପ୍ରବେଶ ପାଇଁ ରାସ୍ତା ଅଣ୍ଡାଳୁଥିବା ଅଥବା ଅଜ୍ଞତା ହେତୁ ବାଟଭାଙ୍ଗି ଚାଲିଯାଉଥିବା ପାଠକଙ୍କ ପାଇଁ ଶ୍ରୀଧର ଶତପଥୀଙ୍କ ଆଲୋଚନାମାନ ଏକ ଏକ ନିର୍ଭରଯୋଗ୍ୟ ପାହାଚ ।

ଜଗନ୍ନାଥ ଭବନ
ଲଣ୍ଡେଇ ସାହି ।
ଭଞ୍ଜନଗର (ଗଞ୍ଜାମ)

# ଶ୍ରୀଧର କବିତ୍ୱ ପ୍ରଭା-ଚନ୍ଦ୍ରପ୍ରଭା

ରାଜେନ୍ଦ୍ର ଷଢଙ୍ଗୀ

"ବହୁଦିନ ହେଲା ପ୍ରାଚୀନରୀତିରେ ଗୋଟିଏ କାବ୍ୟ ରଚନାକରିବା ଇଚ୍ଛାକରି ଚନ୍ଦ୍ରପ୍ରଭାକାବ୍ୟଟି ଲେଖି ରଖିଥିଲି । X X X

ଚନ୍ଦ୍ରପ୍ରଭାକାବ୍ୟର ବିଷୟ ହେଲା ଅବନ୍ତୀରାଜ୍ୟର ରାଜକୁମାରୀ ସହିତ କୋଶଳ ରାଜକୁମାରଙ୍କ ବିବାହ । ଏହା ୧୬ ପ୍ରଭାରେ ବିଭକ୍ତ " । (ସୂଚନା -ଚନ୍ଦ୍ରପ୍ରଭା)

'ଚନ୍ଦ୍ରପ୍ରଭା' ପଣ୍ଡିତ ଶ୍ରୀଧର ଶତପଥୀଙ୍କ ରଚିତ ଏକମାତ୍ର କାଞ୍ଚନିକ କାବ୍ୟ । ଭଞ୍ଜୀୟ ସାହିତ୍ୟରେ ଅବଗ୍ରାହୀ ପଣ୍ଡିତ ଶତପଥୀ ମଧ୍ୟଯୁଗ କାବ୍ୟ ପରମ୍ପରାର ଏକାନ୍ତ ଭକ୍ତ । ଅତି ଭଲପାଉଥିଲେ ଏ ସାହିତ୍ୟକୁ । ତା'ର ଆଲୋଚନାରେ ସାରା ଜୀବନ ବ୍ୟୟୀତ ଜୀବନସାରା କାବ୍ୟଚର୍ଚ୍ଚା କରୁ କରୁ ଶେଷରେ ସେ ମଧ ସେଇଧାରାର ଖଣ୍ଡିଏ କାବ୍ୟ ରଚନାର ମନସ୍ଥ କରି ସୃଷ୍ଟି କରିଛନ୍ତି ଚନ୍ଦ୍ରପ୍ରଭା ।

ଅବନ୍ତୀ ରାଜ୍ୟର ରାଜା ସିଦ୍ଧସେନ ଓ ରାଣୀ ସ୍ୱର୍ଣ୍ଣପ୍ରଭାଙ୍କ କନ୍ୟା ଚନ୍ଦ୍ରପ୍ରଭା ସହ କୋଶଳ ଯୁବରାଜ ବୀରଶେଖରଙ୍କ ପ୍ରେମ ଓ ପରିଣୟର କାହାଣୀ ଆଧାରିତ ଏ କାବ୍ୟ ।

## ନାମକରଣ

ଚନ୍ଦ୍ରପ୍ରଭା- ଚନ୍ଦ୍ରପ୍ରଭା ବା ଆଲୋକିତ ଅଂଶ । ମଧ୍ୟଯୁଗୀୟ କାବ୍ୟ ସାହିତ୍ୟରେ ଚନ୍ଦ୍ରକଳା ହ୍ରାସବୃଦ୍ଧିକୁ ସୌନ୍ଦର୍ଯ୍ୟର ଆଧାର ରୂପେ ଗ୍ରହଣ କରାଯାଇଛି । ବିଶେଷକରି ନାୟିକାର ସୌନ୍ଦର୍ଯ୍ୟବର୍ଣ୍ଣନାରେ ଚନ୍ଦ୍ରକଳାର ଉପମା ପ୍ରଯୁକ୍ତ । କିନ୍ତୁ ଚନ୍ଦ୍ରର ଆଲୋକିତ ଅଂଶକୁ ନେଇ ବିଶେଷ ଆଲୋଚନା ନାହିଁ କହିଲେ ଚଳେ । ଏ କ୍ଷେତ୍ରରେ ପଣ୍ଡିତ ଶତପଥୀ ଚନ୍ଦ୍ରପ୍ରଭାର ନାମକରଣ ଏହି ଆଲୋକିତ ଅଂଶକୁ ନେଇ ନାମିତ କରି ନୂତନ ଦୃଷ୍ଟିଭଙ୍ଗୀଟିଏ ଥୋଇଛନ୍ତି । ସେଇ ଚନ୍ଦ୍ରର ଆଲୋକକୁ ଷୋଳଭାଗକରି କାବ୍ୟଟିକୁ ଷୋଳପ୍ରଭାରେ ବିଭକ୍ତ କରିଛନ୍ତି । ଏଠାରେ କବିସୂର୍ଯ୍ୟଙ୍କ ଚନ୍ଦ୍ରକଳା କାବ୍ୟର ନାମକରଣକୁ ସ୍ମରଣ କରାଯାଇପାରେ ।

ପ୍ରତିପ୍ରଭାରେ ବର୍ଣ୍ଣନୀୟ ବିଷୟ ସୂଚିତ ସେଗୁଡିକ ନିମ୍ନରେ-

ପ୍ରଥମ ପ୍ରଭା - ଶ୍ରୀକୃଷ୍ଣ ବନ୍ଦନା(ଅବନା), ଦ୍ୱିତୀୟ ପ୍ରଭା- ନାମକରଣ ନାହିଁ ଅନିତାନାମ୍ନି ଅପସରା -ନୃତ୍ୟ ରସ ରଙ୍ଗ ହେତୁ ଅଭିଶାପଗ୍ରସ୍ତହୋଇ ଚନ୍ଦ୍ରପ୍ରଭା ରୂପରେ ଜନ୍ମିବାର ସୂଚନା, ତୃତୀୟ ପ୍ରଭା- ଅବନ୍ତୀ ନଗ୍ର ବର୍ଣ୍ଣନ ଓ ଚନ୍ଦ୍ରପ୍ରଭାର ଜନ୍ମ । ଚତୁର୍ଥ ପ୍ରଭା- ଚନ୍ଦ୍ରପ୍ରଭାର ପ୍ରାପ୍ତି ପାଇଁ ଭାବନା, ସପ୍ତମ ପ୍ରଭା- ବର୍ଷାବର୍ଣ୍ଣନା ଓ ରାଜପୁତ୍ରର ବିରହ । ଅଷ୍ଟମ ପ୍ରଭା- ଦେଶ ବର୍ଣ୍ଣନ ।, ଏକାଦଶପ୍ରଭା- ବୀରଶେଖରର ପତ୍ରଧରି ଚନ୍ଦ୍ରପ୍ରଭା ନିକଟକୁ ଦୂତର ଗମନ, ଦ୍ୱାଦଶ ପ୍ରଭା- ଚନ୍ଦ୍ରପ୍ରଭାର ସ୍ୱୟମ୍ବର ବିଚାର, ତ୍ରୟୋଦଶପ୍ରଭା- ବୀର ଶେଖର ନିକଟକୁ ଚନ୍ଦ୍ରପ୍ରଭାର ପତ୍ର, ଚତୁର୍ଦ୍ଦଶ ପ୍ରଭା- ଚନ୍ଦ୍ରପ୍ରଭାର ହରଗୌରୀ ପୂଜା , ପଞ୍ଚଦଶ ପ୍ରଭା- ସ୍ୱୟମ୍ବର ସଭା ବର୍ଣ୍ଣନା ଓ ଚନ୍ଦ୍ରପ୍ରଭାର ବିବାହ, ଷୋଡଶ ପ୍ରଭା- ଯୁବରାଜଙ୍କ ସହ  ରାକ୍ଷସର ଯୁଦ୍ଧ ଓ ମୃତ୍ୟୁ, ରାଜ୍ୟାଭିଷେକ ଓ ଶାସନ ପ୍ରଣାଳୀ ।

ଏଗୁଡିକ ମଧ୍ୟରେ ପ୍ରଥମ, ତୃତୀୟ, ଅଷ୍ଟମ, ନବମ,ଦଶମ, ପଞ୍ଚଦଶ ଓ ଷୋଡଶ ପ୍ରଭା; ନୂତନତାର ପ୍ରୟୋଗ, ଚମତ୍କାରିତା ବର୍ଣ୍ଣନା ଓ କାବ୍ୟ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଆଲୋଚନାର ଦାବି ରଖେ ।  ନିମ୍ନରେ କାବ୍ୟର ବିଶେଷତ୍ୱ ଗୁଡିକୁ ଦେଖାଇ ଦିଆଯାଇପାରେ ।

ପ୍ରଥମ ପ୍ରଭାର ସୌନ୍ଦର୍ଯ୍ୟ-

କାବ୍ୟର ପ୍ରଥମପ୍ରଭା ଅବନାରେ ରଚିତ ଶ୍ରୀକୃଷ୍ଣବନ୍ଦନା; ମଙ୍ଗଳାଚରଣ ଅଟେ । ୧୬ ପଦ ବିଶିଷ୍ଟ ଏ ଛାନ୍ଦରେ ଅବନା ଶବ୍ଦଚୟନ ଓ ପ୍ରୟୋଗ କ୍ଷମତାକୁ ସୂଚାଇଥାଏ । ଦୃଷ୍ଟାନ୍ତ ନିଆଯାଇପାରେ-

ନବଜଳଦ ବରନ  କମଳମଣ୍ଡନ
ଦରଧରଚକ୍ରଧର  ଚନ୍ଦ୍ରକଧରଣ (୪)

*  *  *  *

ଜଗତ ଅବନକର  ଜଗତ ବନ୍ଦନ
ଜଗତର ଧବଅଟ  ଅମର ରତନ (୭)
ଉତ୍କଳର ଗର୍ବଧନ  ଉତ୍କଳ ମଣ୍ଡନ
ଖଚର ଈଶ ମଣ୍ଡନ  ଭକତ ରକ୍ଷଣ (୮)
ବରଜବର ନନ୍ଦବନ  ଆନନ୍ଦବର୍ଦ୍ଧନ
ଅଷ୍ଟମଲ୍ଲ ନଷ୍ଟକର  କଷ୍ଟ ସଂହନନ (୯)

ଜଗନ୍ନାଥଙ୍କଠାରେ କୃଷ୍ଣତ୍ୱର ଆରୋପ । ଜଗନ୍ନାଥ ହିଁ କୃଷ୍ଣ ଅବତାରରେ ଏସବୁ ଲୀଳା ପ୍ରଦର୍ଶନ କରିଛନ୍ତି । ସେ ଚଉବର୍ଗ ପ୍ରଦାନକାରୀ ଦୀପ୍ତିମାନ ସୂର୍ଯ୍ୟ । ତାହାଙ୍କର ପଦ ସ୍ମରଣ କରି ସେ ଏ କାବ୍ୟ ରଚନାରେ ପ୍ରୟାସୀ ।

ବର୍ଣ୍ଣନା ବୈଚିତ୍ର୍ୟ

ପ୍ରକୃତିବର୍ଣ୍ଣନା- ମଧ୍ୟଯୁଗୀୟ କାବ୍ୟ ପ୍ରକୃତି ନାୟକ ନାୟିକାଙ୍କ ଉଦ୍ଦୀପକ ବିଭାବ ଅଟେ । ପ୍ରକୃତିର ଯାହାକିଛି ବର୍ଣ୍ଣନା ନାୟକ ନାୟିକାଙ୍କୁ କେନ୍ଦ୍ରକରି ହିଁ ଆତଯାତ ହୋଇଥାନ୍ତି । କବିଏ ଶୃଙ୍ଗାର କିମ୍ବା ବିରହ ବର୍ଣ୍ଣନାରେ ପ୍ରକୃତିକୁ ନିୟୋଯିତ କରି ଆସିଛନ୍ତି । ଯଦିଓ ଚନ୍ଦ୍ରପ୍ରଭା ମଧ୍ୟଯୁଗୀୟ ଆଦର୍ଶରେ ରଚିତ ଶ୍ରୀଯୁକ୍ତ ଶତପଥୀ କିନ୍ତୁ ପ୍ରକୃତ ବର୍ଣ୍ଣନାରେ ସେହି ଧାରାକୁ ପରିତ୍ୟାଗ କରିଛନ୍ତି । ପ୍ରକୃତି ତାଙ୍କ ବର୍ଣ୍ଣନାରେ ସ୍ୱତନ୍ତରୂପେ ଚିତ୍ରିତ ହୋଇଛି, ତାର ସ୍ୱଭାବିକ ରୂପ ବିଭବକୁ ପ୍ରକାଶ କରିଛି ।
ସକାଳବର୍ଣ୍ଣନା ଅବସରରେ ଦେଖନ୍ତୁ-

ତାମ୍ରଚୂଡ ସ୍ୱର     ହୋଇଲାପ୍ରଖର
        କୁକ୍କୁଟର ସ୍ୱନ ଉଛନ୍ନ
ଦଶଦିଶେ ଶୁଭେ     ପ୍ରତିଧ୍ୱନି ହୋଇ
        ପ୍ରାଣୀଙ୍କୁ କରାଏ ଚେତନ
        ନବକିରଣ, ଦିବାକର କଲେ ପ୍ରଦାନ
ସର୍ବପ୍ରାଣୀଗଣ     ଯେ ଯାହା କର୍ମରେ
        ଯୋଗଦାନ କଲେ ବହନ । (ନବମ ପ୍ରଭା)

ସକାଳହେବାରୁ ଶ୍ରମିକଗଣ କର୍ମରେ ନିଯୁକ୍ତ ହେବା, ଦ୍ୱିଜବର ଶ୍ଳୋକପଠନ କରିବା, ଛାତ୍ରଛାତ୍ରୀମାନେ ପଠନରତ ହେବା, ଯୁବତୀମାନେ ଦେବାର୍ଚ୍ଚନ ପାଇଁ ପୁଷ୍ପଚୟନ କରିବା, ଶିବ ମନ୍ଦିରରେ ଶଙ୍ଖଧ୍ୱନି, ପେଚକର ଅତି ତରତରହୋଇ ବୃକ୍ଷ କୋଟରରେ ଲୁଚିବା ଆଦିର ସ୍ୱାଭାବିକ ବର୍ଣ୍ଣନା ଅତ୍ୟନ୍ତ ହୃଦ୍ୟ ଓ ଆକର୍ଷଣୀୟ ।
ସେହିପରି ସନ୍ଧ୍ୟାର ବର୍ଣ୍ଣନା ଦେଖନ୍ତୁ-

"ଗୋ ଗୋଷ୍ଠରୁ ଗୋରୁପଲ ହୋଇଣ ଅତି ପ୍ରଫୁଲ୍ଲ

ହମ୍ବାରଡି ଦେଇ ଗୃହ ଫେରନ୍ତି ଧୀରେ ,
ବିହଙ୍ଗମ ଦେଇଣରାବ
ନୀଡକୁ ଆସନ୍ତି ଫେରି ବହିସ୍ୱଭାବ (୨)

* * * *

ରଜନୀଗନ୍ଧା ଶେଫାଳୀ ନବବିକଶିତ ମଲ୍ଲୀ
ଦଶଦିଗରେ ସୁବାସ ଅତି ମୋଦରେ
ସୁଶୀତଳ ସମୀରଣ ବାସକରି ବିତରଣ
ସମସ୍ତ ପ୍ରାଣୀଗଣଙ୍କୁ ଦାନହର୍ଷରେ (୪)

ତାପରେ ଆସିଯାଏ ରାତ୍ରୀ । କୃଷକ ଶ୍ରମିକମାନେ ଦିନସାରା ପରିଶ୍ରମ କରି କ୍ଲାନ୍ତ ହୋଇଥାନ୍ତି । ସେମାନେ ରାତ୍ରୀର ଆଗମନ ସଙ୍ଗେ ସଙ୍ଗେ ନିଦ୍ରାବଶରେ ହତଚେତନହୋଇ ଉଠନ୍ତି । ଚକ୍ରବାକ ପକ୍ଷୀ ଉଚ୍ଚ ସ୍ୱରରେ କ୍ରନ୍ଦନ କରେ, ଭଲ୍ଲୁକ ଉଲ୍ଲୁକ ଆଦି ପ୍ରାଣୀମାନେ ରାତି ଆସିବାରୁ ନିଜ ନିଜ କର୍ମରେ ସଂପୃକ୍ତ ରହନ୍ତି । ଚନ୍ଦ୍ରଉଦୟ ହେଲେ-

ଚନ୍ଦ୍ରଉଦୟ ଦେଖିଣ ବାଳକ ବାଳିକାଗଣ
ଜହ୍ନମାମୁଁ ସମ୍ବୋଧନ କରନ୍ତିହର୍ଷେ
ଜହ୍ନିଫୁଲରେ ଅର୍ଚ୍ଚନ କରନ୍ତି କୁମାରୀଗଣ
ଯେ ଯାହା ଶୁଭ ମନାସି ଫେରନ୍ତି ବାସେ
ଯୁଇଜାଇ କୁନ୍ଦ ସୁବାସେ
ଗଣିକାଶିର ମଣ୍ଡନ କରନ୍ତି ହର୍ଷେ ।

ବର୍ଣ୍ଣନାରେ ସ୍ୱାଭାବିକତା ଓ ଚମତ୍ କାରିତାକୁ ଅନୁଭବ କରାଯାଇପାରେ କେବଳ ।

**ନଗର ବର୍ଣ୍ଣନା-**

ନଗର ବର୍ଣ୍ଣନା ପ୍ରସଙ୍ଗରେ ଅବନ୍ତୀନଗର ବର୍ଣ୍ଣନା ଅତି ମନୋରମ । ଏହି ନଗର ସମସ୍ତ ସୁଷମା ପରିପୂର୍ଣ୍ଣ । ରାଜ୍ୟରେ ହର୍ମ୍ୟରାଜି ଶୋଭାପାଏ । ରାସ୍ତା ପ୍ରଶସ୍ତ । ପୁଷ ବଗିଚାରେ ଶୋଭାବର୍ଣ୍ଣନାରେ କବିଙ୍କର ଚାତୁରୀ ପ୍ରକାଶ ପାଇଛି ।

ସେବତୀ-ସୂର୍ଯ୍ୟ, ମଲ୍ଲୀ-ଚନ୍ଦ୍ର, କୁନ୍ଦଫୁଲ -ଶୁକ୍ର ପ୍ରଭୃତି ଫୁଲମାନଙ୍କ ସହିତ ଗ୍ରହ ମଣ୍ଡଳର ତୁଳନା କରାଯାଇଛି ।

ସେବନ୍ତୀ ମଲ୍ଲିବିକଶି          ରବିଚନ୍ଦ୍ର ସମଦିଶି
ଅପରାଜିତା ବିକାଶ ଗୌରି ପ୍ରକାଶ
ବଧୂଲି ମନ୍ଦାର ଜୁଇ          ମଙ୍ଗଳ ସମ ଦିଶଇ
କୁନ୍ଦ କୁସୁମ ବିକାଶ ଶୁକ୍ର ପ୍ରକାଶ
କେତକୀ ଦେଖାଇ ଏଗର୍ବ
ଗୁରୁବୁଧଙ୍କର ତେଜ କରଇ ଖର୍ବ ।

* * * *

ଗ୍ରହ ଗଣିତ ବିବାଦୀ          ସଙ୍ଗତେହୋଇ ବିବାଦୀ
ସୁମନ ସମୂହ ହୋଇ ଅତି ପ୍ରଫୁଲ୍ଲ
ସୌର ମଣ୍ଡଳର ଆକାର
ସମଦିଶଇ ନଗର ଅତି ସୁନ୍ଦର ।
(୨ୟ ୩ୟ ପଦ, ତୃତୀୟ ପ୍ରଭା)

ରୀତିଯୁଗୀୟ ନଗର ବର୍ଣ୍ଣନା ବୈଚିତ୍ୟର ପ୍ରଭାବ ପରିଲକ୍ଷିତ ।

**ରାଜ୍ୟଶାସନ**

ଶ୍ରୀଯୁକ୍ତ ଶତପଥୀ ରାଜ୍ୟଶାସନର ଯେଉଁ ଚିତ୍ର ପ୍ରଦାନ କରିଛନ୍ତି ତାହା ଅତ୍ୟନ୍ତ ବାସ୍ତବଧର୍ମୀ, ଗଭୀର ଜ୍ଞାନ, ଯୁଗୋପଯୋଗୀ ଚେତନା ଭିତ୍ତିକ ହୋଇଛି । ଅବନ୍ତୀ ନଗ୍ର ବର୍ଣ୍ଣନା (ତୃତୀୟ ପ୍ରଭା ), ଦେଶବର୍ଣ୍ଣନା (ଅଷ୍ଟମ ପ୍ରଭା ) ରାଜ୍ୟାଭିଷେକ ଓ ଶାସନ ପ୍ରଣାଳୀ (ଷୋଡଶପ୍ରଭା)ରେ ଯେଉଁସବୁ ବିଷୟରେ ବର୍ଣ୍ଣନା କରାଯାଇଛି; ତାହା ଆଲୋଚ୍ୟ ଅଟେ ।

ରାଜା କେବଳ ଦେବତା ଆଶୀର୍ବାଦର ରାଜ୍ୟଶାସନ କରିବାର ସୁଯୋଗ ପାଇନଥାଏ । ରାଜ୍ୟ ପ୍ରଜାଙ୍କର ମଙ୍ଗଳରେ ରାଜାର ପ୍ରସିଦ୍ଧି । ତେଣୁ ଅନେକ କଲ୍ୟାଣକାରୀ କାର୍ଯ୍ୟ କରିବା ପ୍ରଜାନୁରଞ୍ଜକ ରାଜାର କର୍ତ୍ତବ୍ୟ । ରାଜା ସେବକ ମାତ୍ର । 'ପ୍ରଜାଗଣ ହିତକାମନା,ସତତ ନରପତିଙ୍କ ହିତବାସନା '' (୧୧ପୃ, ତୃତୀୟ ପ୍ରଭା) ମାତୃଭୂମି ଓ ମାତୃଭାଷାର ଉନ୍ନତି କଲ୍ପେ ରାଜା ରାଜ୍ୟର କବି, ପଣ୍ଡିତ ଓ କର୍ମଚାରୀ ମାନଙ୍କୁ ନିଯୁକ୍ତି କରିଛନ୍ତି ।

ସହରକ୍ଷେ କବିନିକର
ମାତୃଭାଷାର ଉନ୍ନତି କରି ପ୍ରଚାର । (୪ପଦ, ତୃତୀୟ ପ୍ରଭା)

* * * * * *

କବିଗଣଙ୍କ ଭାରତୀ କରି ପ୍ରଚାର
ରାଜା ଆଜ୍ଞା ବହିଣ ଶିର
ମାତୃଭୂମି ସେବା କାର୍ଯ୍ୟେ ହରଷ ଭର ।(୧୦ପଦ,ତୃତୀୟ ପ୍ରଭା)

ମାତୃଭାଷାରେ ନୂତନ କାବ୍ୟ ରଚନା କରିବା ପାଇଁ ଲେଖକମାନଙ୍କୁ ଉତ୍ସାହିତ କରାଯାଏ । ନବୀନ ଲେଖକମାନଙ୍କର କାବ୍ୟ କବିତାର ଆଲୋଚନା କରାଯାଇ ଶ୍ରେଷ୍ଠ କୃତୀମାନଙ୍କୁ ପୁରସ୍କୃତ କରାଯାଏ । (୮ମପଦ, ତୃତୀୟ ପ୍ରଭା )

କୃଷି ଦ୍ୱାରା ରାଜ୍ୟର ଉନ୍ନତି । ଖାଦ୍ୟାଭାବଦୂର ପାଇଁ କୃଷି ଉତ୍ପାଦନ ଜରୁରୀ । ସେଥିପାଇଁ ଜଳସେଚନ କରି ଜମିମାନଙ୍କୁ ସୁଫଳା କରିବାକୁ ହେବ । ତେଣୁ ଯନ୍ତ୍ରୀ ମାନଙ୍କ ସହ ବିଚାରକରି ସଲିଳ ସେଚନର ବିଧାନ କରାଯାଇଛି । ଯାହାଦ୍ୱାରା ଜଳକଷ୍ଟ ରହିବ ନାହିଁ ଏବଂ ଉତ୍ତମ ଫସଲରେ ଧରଣୀପୃଷ୍ଠ ହସି ଉଠିବ । ଗୋ ସଂପଦର ବିକାଶ ଦିଗରେ ରାଜା ଧ୍ୟାନ ଦେଇଛନ୍ତି । କୃଷିର ପ୍ରଧାନ ସହାୟକ ଗୋସଂପଦ । ଚାଷବାସରେ ସହାୟତା କରିବାଠାରୁ ଆରମ୍ଭକରି ସେମାନଙ୍କର ମଳ, ମୂତ୍ର, ଖତ ରୂପରେ ଶସ୍ୟ ସମୃଦ୍ଧିରେ ସହାୟକ । ଶିକ୍ଷାର ବିସ୍ତାର ଓ ରାଜ୍ୟରୁ ଅଜ୍ଞାନତା ଦୂରୀକରଣ ନିମିତ୍ତ ମହାବିଦ୍ୟାଳୟମାନ ସ୍ଥାପନ, ରାଜ୍ୟରେ ବିଦ୍ୟୁତ ଆଲୋକ ବ୍ୟବସ୍ଥା, ଦୂରଦର୍ଶନ କେନ୍ଦ୍ର ସ୍ଥାପନ , ଦୂରଶ୍ରବଣ ଦ୍ୱାରା ଯୋଗାଯୋଗ, କଳକାରଖାନା ସ୍ଥାପନ କରି ଦେଶର ସମୃଦ୍ଧି କରିବା , ସ୍ୱଦେଶ ବାହିନୀ ଜାଗ୍ରତରହି ସତତ ଦେଶରକ୍ଷାରେ ନିୟୋଜିତ ରହିଥାନ୍ତି । ଶତ୍ରୁ ଆକ୍ରମଣର ସୂଚନା ପାଇବା କ୍ଷଣି ଆକ୍ରମଣ ପାଇଁ ତୟାର, ପାରମ୍ପରିକ ଓ ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇଥାଆନ୍ତି । ଏହି ପ୍ରତିରକ୍ଷା ବାହିନୀ । ଗଜ ବାଜି ସୈନ୍ୟଗଣ ସହିତ , କ୍ଷେପଣ ଓ ମାରଣାସ୍ତ୍ର ଅଳ୍ପକ୍ଷଣରେ ଜଗତ ବିଧ୍ୱଂସକାରୀ- ପରମାଣୁ ଅସ୍ତ୍ରରେ ଶକ୍ତିଶାଳୀ । ଅନ୍ୟଦେଶର ଖବର ଜାଣିବା ପାଇଁ ଗୁପ୍ତଚର ସଂସ୍ଥା ଜାଗତିଆର ।

ବିଦେଶୀ ପଣ୍ଡିତମାନେ ଏହି ଦେଶକୁ ଆଗମନ କରନ୍ତି । ନିଜର ପାଣ୍ଡିତ୍ୟ ପ୍ରଦର୍ଶନ କରନ୍ତି । ଏବଂ ରାଜାଙ୍କଠାରୁ ଉପଯୁକ୍ତ ସମ୍ମାନ ଓ ପୁରସ୍କାର ପାଇଥାନ୍ତି ।

ରାଜ୍ୟରେ ଶାନ୍ତିଶୃଙ୍ଖଳା ରହିଛି । ପ୍ରଜାଗଣ ସୁରକ୍ଷିତ । ଚୋରି, ହତ୍ୟା, ଧର୍ଷଣ ଆଦିର ଚିହ୍ନ ନାହିଁ ।

ବ୍ରାହ୍ମଣମାନଙ୍କ ଦ୍ୱାରା ହୋମଯଜ୍ଞ କରାଯାଇ ପଞ୍ଚମାତା ସେବା କରାଯାଏ । ଏଠାରେ ସବୁ ଧର୍ମକୁ ସମ୍ମାନ ଦେଖାଯାଏ । ପ୍ରତ୍ୟେକ ଧର୍ମାବଲମ୍ବୀ ନିଜ ଧର୍ମ ଉପାସନା

ସୁଯୋଗ ପାଇଥାନ୍ତି । ପୁଣି -

| | |
|---|---|
| ପଞ୍ଚାୟତ ସଭାମାନ | ରାଜ୍ୟକରସ୍ଥାପନ |
| ରୋଗର ନିରାକରଣେ | ସ୍ୱାସ୍ଥ୍ୟ କେନ୍ଦ୍ରମାନଯେ, |
| ପଣ୍ଡିତଜନେ କରନ୍ତି | ସୁକାବ୍ୟ ଲିଖନ |
| ଦେଶ ବିଦେଶ ସମ୍ବାଦ | କରନ୍ତି ପଠନ ଯେ । |
| | (୩୭ପଦ,ଷୋଡଶ ପ୍ରଭା) |

ଏହିପରି ପ୍ରଜାମଙ୍ଗଳ କାର୍ଯ୍ୟକ୍ରମର ପ୍ରଣୟନ ଦ୍ୱାରା ଦାରିଦ୍ର୍ୟ, ଅଶିକ୍ଷା, କ୍ଷୁଧା ପ୍ରଭୃତି ଦୂର ହୋଇ ରାଜ୍ୟ ଏକ ପ୍ରଗତିଶୀଳ ରାଜ୍ୟରେ ପରିଣତ ହୋଇପାରିବ । ଏହାଦ୍ୱାରା-

| | |
|---|---|
| ଦେଶୁ ଦରିଦ୍ର ରାକ୍ଷସ | କଲାଯେ ଗମନ |
| ଜନସାଧାରଣ କଷ୍ଟ | ହୋଇଲାମୋଚନ ଯେ । |
| | (୩୮ ପଦ ଷୋଡଶ ପ୍ରଭା ) |

ଲୋକ ସଂସ୍କୃତିର ଚିତ୍ର -

ବିବାହ ପାଇଁ ଲଗ୍ନସ୍ଥିର କରିବାକୁ ଉଭୟରାଜ୍ୟର ଗୁରୁ ଓ ପୁରୋହିତମାନେ ଏକାଠି ହୋଇ ବିଚାର କରୁଛନ୍ତି । ମାଘଶୁକ୍ଳଦଶମୀ ବିବାହ ତିଥିରୂପେ ସ୍ଥିର ହୋଇଛି । ବିବାହ ଦିନ ଟମକ, ଭେରୀ, ଟାଙ୍ଗୁବାଦ୍ୟ, ଶଙ୍ଖ ବାଜିବା , କୋଇଲିବୁଡ ହେବା, ବାଟବେରଣ କରିବା, ପ୍ରଥମ ବରଣ, ଦ୍ୱିତୀୟ ବରଣ, ଅଗ୍ନି ସଂସ୍ଥାପନ କରାଯାଇଛି ବୈଦିକ ବିଧିରେ । କନ୍ୟାକୁ ଆଣିବା, ଲବଣଚଉରୀ ବିଧି ଆଦି ଲୋକସଂସ୍କୃତିର ବିବିଧ ଚିତ୍ର ଏହି କାବ୍ୟରେ ପ୍ରଦତ୍ତ ।

ରାଜକନ୍ୟାଗମନ ସମୟରେ ରାଜପୁତ୍ର ଓ ଅନ୍ୟମାନଙ୍କ ପାଇଁ ନେଇଥିବା ଯୌତୁକ ଏବଂ ରାଜପୁତ୍ର ତରଫରୁ ବିଧିପାଇଁ ଦେଇଥିବା ଅଳଙ୍କାରର ଚିତ୍ର ରହିଛି । ଉଭୟ ରାଜନ ମିଳିତ ହୋଇ ବଧୂଜାମାତାକୁ ଆଶିଷ ପ୍ରଦାନ କରୁଥିବାର ଚିତ୍ର ରହିଛି ।

ଉଭୟ ରାଜନ ହୋଇ ମିଳନ
ବଧୂଜାମାତାକୁ ଆଶିଷ ଦାନ
ଲାଜାହୋମ କରି ବ୍ରାହ୍ମଣ ଗଣ
ସପ୍ତପଦୀ ବନ୍ଦାପନା କରିଣ
କଉଡି ଖେଳ ସୁକାରି ଯେ

ହୁଳହୁଳି ନାଦ ଶଙ୍ଖରଶବଦ

ଦଶଦିଶେ ଅଛି ପୂରିଯେ ।

(୩୦ପଦ ପଞ୍ଚଦଶ ପ୍ରଭା )

ନାରୀର ବୀରତ୍ୱ ଓ ସ୍ୱାଧୀନତା

ମଧ୍ୟଯୁଗୀୟ କାବ୍ୟ ନାୟିକା ଭଳି ଚନ୍ଦ୍ରପ୍ରଭା କେବଳ ସୁନ୍ଦରୀ ଓ ଶୃଙ୍ଗାର ମୟୀନୁହେଁ । ସେ ବିଚାର କୁଶଳା, ସ୍ୱାଧୀନଚିନ୍ତା ଓ ମତପ୍ରଦାୟିନୀ ଏବଂ ବୀରାରମଣୀ ଅଟେ । ପତ୍ରଲିଖନରେ, ସଙ୍ଗୀମାନଙ୍କ ସହିତ ବିଚାର ଆଲୋଚନାରେ ସେ ନିଜର ସ୍ୱାଧୀନମତ ପ୍ରକାଶ କରିଛି । ଏପରିକି ବୀରଶେଖରକୁ ଯୁଦ୍ଧ କରିବାପାଇଁ ପ୍ରେରଣା ଦେଇ ନିଜର ବୀରତ୍ୱ ଓ କ୍ଷାତ୍ରଧର୍ମର ପରିଚୟ ଦେଇଛି ।

ସ୍ୱୟମ୍ବର ସଭାରେ ଚନ୍ଦ୍ରପ୍ରଭା ଯେତେବେଳେ ବୀରଶେଖରର ଗଳାରେ ବରମାଳା ପ୍ରଦାନ କରିଛି । ସେତେବେଳେ ଅନ୍ୟରାଜାମାନେ ଯୁଦ୍ଧକରି ଚନ୍ଦ୍ରପ୍ରଭାକୁ ଛଡାଇନେବାର ଆୟୋଜନ କରିଛନ୍ତି । ଯଦିଓ ସେ ସଦ୍ୟ ବିବାହିତା । ବଧୂବେଶରେ ଅବଗୁଣ୍ଠନବତୀ । ଚନ୍ଦ୍ରପ୍ରଭା କିନ୍ତୁ ଚୁପ୍ ରହିନାହିଁ । ରାଜପୁତ୍ର (ସ୍ୱାମୀ)କୁ ନିଜ କର୍ତ୍ତବ୍ୟ ପଥରେ ଅର୍ଥାତ୍ ଯୁଦ୍ଧ କରିବା ପାଇଁ ଅନୁରୋଧ କରିଛି । -

ଚନ୍ଦ୍ରପ୍ରଭାନାରୀ ସଖୀ ଗହଣେ
କୋଶଳସୁତଙ୍କ ପଡି ଚରଣେ
ଆହେ ଯୁବରାଜ କର ସମର
ଅଛନ୍ତି ଆମ୍ଭର ସୈନ୍ୟ ଅପାର
ଏକାନୁହେଁ ବୀରବର ଯେ
ବୀରାଙ୍ଗନା ପାଶରେ ରହିଛି
କରିବା ନିଶ୍ଚେ ସମର ଯେ ।

ବୀରରମଣୀ ସେ । ରାଜପୁତ୍ର ଏକାକୀ ନୁହନ୍ତି । ସେ ମଧ୍ୟ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେବାର ଦୃଢ ନିଷ୍ପତ୍ତି ଜଣାଇଛି ।

ଚନ୍ଦ୍ରପ୍ରଭା କାବ୍ୟରେ ଭଞ୍ଜକାବ୍ୟର ପ୍ରଭାବ ସହଜରେ ଲକ୍ଷ୍ୟ କରାଯାଇପାରେ - ଛାନ୍ଦ ପରିକଳ୍ପନା, ଋତୁ ବର୍ଣ୍ଣନା, ରାଗ ନିରୂପଣ ପ୍ରଭୃତିରେ ସ୍ଥାନେ ସ୍ଥାନେ ଭଞ୍ଜକାବ୍ୟର ସୁପ୍ରସିଦ୍ଧ ରାଗ ଓ କାବ୍ୟ ପଂକ୍ତିର ପ୍ରୟୋଗ ମଧ୍ୟ ରହିଛି । ଯେପରି -

| | |
|---|---|
| ଅତିରସମୟ ସୁରଭି ସମୟ | ଅତିରସମୟ ସମୟବସନ୍ତ |
| ହୋଇଲା ଆସି ପ୍ରବେଶ | ବିଚିତ୍ର ପ୍ରମେୟ ତାହାର |
| (ଚନ୍ଦ୍ରପ୍ରଭା ଦ୍ୱିତୀୟପ୍ରଭା) | (ଉପେନ୍ଦ୍ର ଭଞ୍ଜ ) |

| | |
|---|---|
| ମଳୟଗିରିର ଗନ୍ଧ ଚୋରିକରି | ମଳୟ ଶିଖରୀ ଶିରୀ ଚୋରିକରି |
| ବହିଲା ମନ୍ଦ ସମୀର | ବହିଲାନି ମନ୍ଦ ସମୀର |
| ସୁମନାମାନଙ୍କ ସୁମନାମାନଙ୍କ | ସୁମନାଙ୍କବାସ ଚୋରାଇନେବଟି |
| ସୁବାସ କରିବ ଦୂର | ବୋଲି କହିଲାନି ଭ୍ରମର |
| (ଦ୍ୱିତୀୟ ପ୍ରଭା) | (ଉପେନ୍ଦ୍ର ଭଂଞ୍ଜ ) |
| ଏହି ସମୟରେ ସୁରେନ୍ଦ୍ର ଛାମୁରେ | ଏହି ସମୟରେ ସୁନ୍ଦରି ଛାମୁରେ |
| ଜଣାଇଲା ସୁର ଗଣ | ପ୍ରଭାମଞ୍ଜୁଳା ଜଣାଇଲା |
| (ଦ୍ୱିତୀୟପ୍ରଭା) | (ଉପେନ୍ଦ୍ର ଭଞ୍ଜ) |

ସେହିପରି 'ଅଭିଜ୍ଞାନ -ଶାକୁନ୍ତଳମ୍'ର ଶକୁନ୍ତଳାଙ୍କୁ ଭ୍ରମର କବଳରୁ ରକ୍ଷା କରୁଥିବା ଦୁଷ୍ମନ୍ତଙ୍କର ଚିତ୍ରକୁ, ଚନ୍ଦ୍ରପ୍ରଭାକୁ ଭ୍ରମରକବଳରୁ ରକ୍ଷାକରିଥିବା ରାଜଶେଖରଙ୍କ ଚିତ୍ର ସହିତ ତୁଳନୀୟ । ଏହା ପଣ୍ଡିତ ଶ୍ରୀଧର ଶତପଥୀଙ୍କ କବିତ୍ୱ ପ୍ରତିଭାର ପ୍ରାଥମିକ ଏବଂ ଏକକ ସ୍ଫୁରଣ । ତାହାଙ୍କ ରୀତିକାବ୍ୟ ପ୍ରୀତିର ଓ ପ୍ରେରଣା ପ୍ରଭାବର ଏହା ଏକ ନିଦର୍ଶନ ମାତ୍ର । ଚନ୍ଦ୍ରପ୍ରଭା ଆଲୋଚନା କାଳରେ ଏହିକଥା ଆମ ସ୍ମରଣରେ ରହିବା ବାଞ୍ଛନୀୟ ।

ଲୋକସଂସ୍କୃତି ଗବେଷଣା କେନ୍ଦ୍ର
ଭଞ୍ଜନଗର ।

* * * * *

# ଗବେଷକ ଭଞ୍ଜଶ୍ରୀ ଶ୍ରୀଧର

ଡକ୍ଟର ଲମ୍ବୋଦର ପାଣିଗ୍ରାହୀ

ଏକ ନିର୍ଦ୍ଦିଷ୍ଟ ମାପକାଠି ନେଇ ଏକ ବ୍ୟକ୍ତିତ୍ୱର ମାପ ସମ୍ଭବ ନୁହେଁ । ଏପରି ମାପିବାର ପ୍ରୟାସ ଯଦି କେବେ କେଉଁଠାରେ ହୋଇଛି ତେବେ ତାହା ଯେ ସଂପୂର୍ଣ୍ଣ ପ୍ରବଞ୍ଚନା ହୋଇଥିବ ତାହା ନିଃସନ୍ଦେହ । ବେଳେ ବେଳେ ଆମେ ସବୁ ନିଜକୁ ବଡ ଜ୍ଞାନୀ ବୋଲାଉଥିବା କତିପୟ ଶିକ୍ଷିତ ଗୋଷ୍ଠୀ କୌଣସି ମହାତ୍ମାଙ୍କର ବଡପଣିଆ କେଉଁଠାରେ ରହିଛି ତାହାକୁ ବର୍ଣ୍ଣନା କରିବାକୁ ଯାଇ ସେ ଏପରି କରିଥିଲେ ସେପରି ଜାଣିଥିଲେ ପୁଣି କେତେକ ପାରମ୍ପରିକ ଶବ୍ଦ ଯଥା - ବିଜ୍ଞ, ସଂଗ୍ରାମୀ, ପଣ୍ଡିତ, ଜ୍ଞାନୀ ଆଦି ବ୍ୟବହାର କରି ତାଙ୍କର ଗୁଣ କୀର୍ତ୍ତନ କରୁଥାଉ । କିନ୍ତୁ ଯାହାକୁ କହିଲେ ତାଙ୍କର ବଡପଣିଆ ପ୍ରକାଶପାଇବା କଥା ତାହା କରି ନଥାଉ । ଏହାଦ୍ୱାରା ଆମେ ଗୁଣୀ ତଥା ପୂଜ୍ୟପ୍ରତିଭାକୁ ସମ୍ମାନିତ କରୁକି ସେହି ସ୍ଫୁଲିଙ୍ଗକୁ ଅଙ୍ଗାର ଓ ବିଭୁତିରେ ଘୋଡାଇ ଦେଉ ଜାଣିପାରୁନାହୁଁ । ଫଳରେ ଚାରି ଅନ୍ଧର ହାତୀ ଦେଖା ପ୍ରସଙ୍ଗ ପରି ବ୍ୟକ୍ତିତ୍ୱର ମୂଲ୍ୟାୟନ ହୋଇଯାଏ ।

ଆଜିକାଲି ବିଶ୍ୱବିଦ୍ୟାଳୟର ଉପାଧି ଗବେଷକ ପ୍ରତିଭାର ପରିମାପକ ହୋଇଛି । ଉପାଧି ପ୍ରାପ୍ତିର ଅଭିଳାଷ ହିଁ ପ୍ରାୟତଃ ଗବେଷଣାରହେତୁ ବୀଜ ଅଟେ । ଏମାନଙ୍କ ଲବ୍ଧ ଜ୍ଞାନର ମହତ୍ୱ ରହିଛି । କିନ୍ତୁ ଯେଉଁ ଗବେଷକ କୌଣସି ପ୍ରାପ୍ତି ଇଚ୍ଛା ନରଖି ମହତ୍ ଉଦ୍ଦେଶ୍ୟରେ କାର୍ଯ୍ୟକରନ୍ତି ତାଙ୍କର ସିଦ୍ଧାନ୍ତ ବଳିଷ୍ଠ ହେବା ସ୍ୱାଭାବିକ । ସେ ଗୋଟିଏ ନିଷ୍କର୍ଷରେ ପହଞ୍ଚି ଅଟକି ଯାଆନ୍ତି ନାହିଁ । ନିରବିଚ୍ଛିନ୍ନଭାବେ ତାଙ୍କର ସାଧନା ଚାଲୁ ରହିଥାଏ । ଏଣୁ ଚଳନ୍ତି ସମୟ ଏବଂ ଭବିଷ୍ୟତକାଳରେ ସେ ଚର୍ଚ୍ଚାର ପରିଧିରୁ ବାଦ ପଡନ୍ତି ନାହିଁ । ତାଙ୍କର ଗବେଷଣା ଲବ୍ଧ ତଥ୍ୟ ପରବର୍ତ୍ତୀ ପୁରୁଷକୁ ପ୍ରେରଣା ଦେଇଥାଏ । ଏପରି ଯୁଗପୁରୁଷ କେବେ ସ୍ୱାର୍ଥାନ୍ଧ ହୋଇପାରନ୍ତି ନାହିଁ । ତାଙ୍କ ନିକଟରେ ଗଚ୍ଛିତ ତଥ୍ୟକୁ ଗୁପ୍ତ କରି ଅନ୍ୟକୁ ଭୁଆଁ ବୁଲାନ୍ତି ନାହିଁ । ନିଜ ଅପେକ୍ଷା ଅନ୍ୟର ଅନ୍ୱେଷଣକୁ ପୁଷ୍ଟ କରିବା ପାଇଁ ଯଥାର୍ଥ ମାର୍ଗ ଦେଖାନ୍ତି । କେବଳ ସେତିକି ନୁହେଁ ତାଙ୍କର ଅଭିପ୍ରେରଣା ଏବଂ ସାହାସ ପ୍ରଦାନ ଅନ୍ୟ ନୂତନ ଗବେଷକର ଆତ୍ମବିଶ୍ୱାସ ବଢାଇଥାଏ । ଏପରି ଜଣେ ପ୍ରବାଦ ପୁରୁଷ ଅଟନ୍ତି ଘୁମୁସରର ଭଞ୍ଜଶ୍ରୀ ଶ୍ରୀଧର ଶତପଥୀ ।

ଐତିହ୍ୟ ସମ୍ପନ୍ନ ଘୁମୁସରର ସାରସ୍ୱତ ପରମ୍ପରା ଓ ପାରିବାରିକ ସଂସ୍କାର ତଥା ବାଣୀସାଧନାର ପୃଷ୍ଠଭୂମିରେ ପଣ୍ଡିତ ଶ୍ରୀଧରଙ୍କ ୧୯୧୪ ସେପ୍ଟେମ୍ବର ୧୫ ତାରିଖରେ ପ୍ରଥମ ସୂର୍ଯ୍ୟଦର୍ଶନ ହୋଇଥିଲା ପୁରୁଣା ଘୁମୁସରଗଡ ସନ୍ନିକଟ ବାସୁଦେବପୁର ଶାସନରେ । ପୁରୁଷାନୁକ୍ରମିକ ବିଦ୍ୟାଚର୍ଚ୍ଚା ମାତୃ ଗର୍ଭସ୍ଥ ଅଭିମନ୍ୟୁ ପରି ଶ୍ରୀଧରଙ୍କୁ ପ୍ରଭାବିତ କରିଥିବ ଏହା କହିବା ନିଷ୍ପ୍ରୟୋଜନ । ଏଣୁ ରଥୀମାନଙ୍କ ସମକକ୍ଷ ହେବା ସକାଶେ ବାସୁଦେବ ସଂସ୍କୃତ ଟୋଲରୁ ଦଶବର୍ଷ ବୟସ ଠାରୁ ''ପ୍ରତିଭା''ରେ ସେ ମସୀ ଚାଳନା କରିଛନ୍ତି । ଶେଷ ନିଶ୍ୱାସ ପର୍ଯ୍ୟନ୍ତ ଅଭିମନ୍ୟୁ ଯେପରି ସଂଗ୍ରାମରତ ଥିଲେ ସେପରି ଶ୍ରୀଧରଙ୍କ ବାଣୀସାଧନା ଚାଲିଥିଲା ଶେଷ ହୃଦସ୍ପନ୍ଦନ ଯାଏଁ । ବିପୁଳ ସୃଷ୍ଟିର ସ୍ରଷ୍ଟା ଗୌରବର ସେ ଅଧିକାରୀ ନୁହଁନ୍ତି । ''ରାଜକବି ଧନଞ୍ଜୟ ଭଞ୍ଜ ଏବଂ ସଂକ୍ଷିପ୍ତ ଘୁମୁସର ଇତିହାସ'',''ଅମର ସନ୍ତାନ କବି ସମ୍ରାଟ ଉପେନ୍ଦ୍ରଭଞ୍ଜ'', ''ଭଞ୍ଜ ସଂନ୍ଦର୍ଭ'', ''ଭଞ୍ଜ ସାହିତ୍ୟରେ ପ୍ରକୃତି ଚିତ୍ର'', ପ୍ରଭୃତି ଗବେଷଣାଧର୍ମୀ ପୁସ୍ତକ, 'ଗୀତାଭିଧାନ', 'ଶୋଭାବତୀ ଓ ଚନ୍ଦ୍ରରେଖା' ସଂକଳନ ଏବଂ 'ଚନ୍ଦ୍ରପ୍ରଭା' ସ୍ୱରଚିତ କାବ୍ୟ ଶ୍ରୀଧରଙ୍କ ସୃଷ୍ଟି ସୌନ୍ଦର୍ଯ୍ୟର ସ୍ୱାକ୍ଷର ବହନ କରିଛି। ସୃଜନଶୀଳ ସୃଷ୍ଟିର ଦୁଇଟି ନମୁନା ଦେଲେ ଶ୍ରୀଧରଙ୍କ ପ୍ରତିଭାକୁ ଭାତ ଚିପିବା ନ୍ୟାୟରେ ଅନୁମାନ କରିହେବ ।

'' ଗିରିବର ନନ୍ଦିନୀ ଗିରିବର ବାସିନୀ
ଗିରୀଶ ମାନସ ମୋହିନୀ
ଅଣାକାର ମା' ତୁହି ସାକାରେ ପୂଜା ପାଇ
ଜୟତୁ ଶାର୍ଦ୍ଦୁଳ ବାହିନୀ ଗୋ ବ୍ୟାଘ୍ରଦେବୀ
ଭକତ ପୂଜନ୍ତି ପୟର ମନ ଜପନ୍ତି ନିରନ୍ତର
ଗହନ ରୂପ ତୋର ଯୋଗୀରେ ଅଗୋଚର
ବର୍ଣ୍ଣନେ ସମର୍ଥ କାହାର'' । (୧)

ପୁଣି-

ଚନ୍ଦ୍ର ଉଦୟ ଦେଖିଣ ବାଳକ ବାଳିକାଗଣ
ଜହ୍ନମାମୁଁ ସମ୍ବୋଧନ କରନ୍ତି ହର୍ଷେ
ଜହ୍ନିଫୁଲରେ ଅର୍ଚ୍ଚନ କରନ୍ତି କୁମାରୀ ଗଣ
ଯେ ଯାହା ଶୁଭ ମନାସୀ ଫେରନ୍ତି ବାସେ
ଯୁଇ ଜାଇ କୁନ୍ଦ ସୁବାସେ
ଗଣିକା ଶିର ମଣ୍ଡନ କରନ୍ତି ହର୍ଷେ । (୨)

ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ପ୍ରୟୋଗରେ ପଣ୍ଡିତ ଶ୍ରୀଧରଙ୍କ ଯେଉଁ ଦକ୍ଷତା ଉପରୋକ୍ତ ନମୁନା ଦୁଇଟିରୁ ଆମେ ପାଉ ତାହା ତାଙ୍କ କବି ପ୍ରତିଭାର ଗୋଟିଏ ଦିଗନ୍ତକୁ ହିଁ ପ୍ରତିଭାତ କରିଥାଏ । ଲୋକ ଉପାଦାନ ତଥା ଲୋକ ବିଶ୍ୱାସର ରୁଚି ସଂପନ୍ନ ପ୍ରକାଶ ଉଦ୍ଧୃତ ପଂକ୍ତି ଗୁଡିକରୁ ଅବବୋଧ କରିହୁଏ । କିନ୍ତୁ ଭଞ୍ଜଶ୍ରୀ ଶ୍ରୀଧରଙ୍କ ଗୌରବ ପ୍ରସାରଣଶୀଳ ହୋଇଛି ତାଙ୍କର ସଂନ୍ଦର୍ଭ, ଜୀବନୀ ଏବଂ ସଂକଳନ ଗୁଡିକରେ । ସେଥିରୁ ଆମ୍ଭେ ତାଙ୍କର ସତ୍ୟସନ୍ଧାନୀ ମନନର ଏବଂ ଗବେଷକ ଦୃଷ୍ଟିଭଙ୍ଗୀର ପରିଚୟ ପାଉ ।

ଶ୍ରଦ୍ଧା ଓ ଆନ୍ତରିକତା ଗବେଷକର ମୂଳ ପୁଞ୍ଜି । ଏହା ଅନୁଶୀଳନ ପାଇଁ ପ୍ରେରଣା ଯୋଗାଇଥାଏ । ଶ୍ରଦ୍ଧା ଓ ଆନ୍ତରିକତା ପ୍ରବଳ ହେଲେ ତଥା ନିଶାପରି ଘାରିଲେ ଗବେଷକ ଅଧ୍ୟବସାୟ ପ୍ରତି ମନ ଦିଏ । ପଣ୍ଡିତ ଶତପଥି ଏପରି ନିଶାଖୋର ମଣିଷଟିଏ ଥିଲେ । ଭଞ୍ଜ ସାହିତ୍ୟ ପରିଷଦ, ଭଞ୍ଜନଗର, ଉପେନ୍ଦ୍ରଭଞ୍ଜ ଉଚ୍ଚ ବିଦ୍ୟାଳୟ, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ମହାବିଦ୍ୟାଳୟ ସହ ଅନ୍ତରଙ୍ଗ ହେବା ପରେ ଭଞ୍ଜଙ୍କ ସମ୍ପର୍କରେ ଜାଣିବା ଓ ଜଣାଇବା ପାଇଁ ସେ ଆଗ୍ରହ ହୋଇଛନ୍ତି । ମିଷ୍ଟଭାଷୀ ତଥା ବନ୍ଧୁପ୍ରେମୀ ଶ୍ରୀଧରଙ୍କୁ ଉପେନ୍ଦ୍ରଭଞ୍ଜ ଏବଂ ଘୁମୁସର ରାଜବଂଶର ଇତିହାସ ଅନୁସନ୍ଧାନ ପାଇଁ ପୁରୁଣା ଘୁମୁସରଗଡ ନିକଟରେ ପୈତୃକ ଭିଟାମାଟି, ଭଞ୍ଜ ରାଜ ବଂଶଙ୍କ ଦ୍ୱାରା ସ୍ଥାପିତ ଶାସନର ସଂସ୍କୃତ ଟୋଲରେ ଅଧ୍ୟୟନ, ପୂର୍ବ ସଂସ୍କାର, କର୍ମକାଣ୍ଡ ଦ୍ୱାରା ଜନ ସମ୍ପର୍କ ବହୁ ସାହାଯ୍ୟ ଯୋଗାଇଛି । ଏଣୁ ସେ ତଥ୍ୟ ଅନୁସନ୍ଧାନରେ ନିୟୋଜିତ ହୋଇ ବହୁ ପ୍ରାଚୀନ ପୋଥି ସଂଗ୍ରହ ଏବଂ ବହୁ ଲୋକଙ୍କ ସାକ୍ଷାତକାର ଟିପି ରଖିଥିଲେ । ପାଣ୍ଡୁଲିପି ଅନ୍ୱେଷଣ ତାଙ୍କ କାର୍ଯ୍ୟକ୍ରମର ଅନ୍ୟତମ ଅଂଶ ହୋଇଯାଇଥିଲା । ଏକଥା ସ୍ୱୀକାର ଯୋଗ୍ୟ ଯେ ପଣ୍ଡିତ ଶ୍ରୀଧର ଶତପଥୀ ଜଣେ ଭଞ୍ଜ କୃତିର ବିଶିଷ୍ଟ ସଂଗ୍ରାହକ । ପ୍ରକାଶିତ ଅପ୍ରକାଶିତ ଅନେକ ଭଞ୍ଜୀୟ ଗ୍ରନ୍ଥ ସେ ବହୁତ ଶ୍ରମ ସାଧନାରେ ସଂଗ୍ରହ କରି ପାରିଛନ୍ତି । ସେଥି ମଧ୍ୟରୁ କିଛି କିଛି ମୁଁ ଦେଖିବାର ସୁଯୋଗ ପାଇଛି । (୩)

ଭଞ୍ଜ ସାହିତ୍ୟ ପରିଷଦର ସଂପାଦକ ହେବା ପରେ ଶ୍ରୀଯୁକ୍ତଶତପଥୀ ପୋଥି ଅନ୍ୱେଷଣରେ ନିଜକୁ ସଂପୂର୍ଣ୍ଣ ନିୟୋଜିତ କରିଛନ୍ତି । ''ଗାଆଁ କୁ ଗାଆଁ ବୁଲି ବିଭିନ୍ନ ତାଳପତ୍ର ପୋଥି ଓ ଭଞ୍ଜଙ୍କ ଅପ୍ରକାଶିତ ପୋଥି ସଂଗ୍ରହ କରିବା ମୋର ପ୍ରଧାନ କାମ ଥିଲା + + + । ମୁଁ ପ୍ରାୟ ୬୦ ଖଣ୍ଡ ତାଳପତ୍ର ପୋଥି ବିଭିନ୍ନ ଲୋକଙ୍କ ଠାରୁ ସଂଗ୍ରହ କରିଥିଲି ।''(୪) ଗହଙ୍ଗୁର ମୋହନ ପଟ୍ଟନାୟକ ଓ କ୍ଷେତ୍ରବାସୀ ମୋହନୀ,

ଭଞ୍ଜନଗରର ଗଦାଧର ଦାସ ବାବାଜୀ, ବିରିପୁରର ଦେବରାଜ ପାତ୍ର, ଲେମ୍ବେଇର ମୋହନ ପ୍ରଧାନ ଆଦି ସହୃଦ ବ୍ୟକ୍ତିଙ୍କ ଠାରୁ ସେ ଯେଉଁ ଦୁର୍ମିଳ ପୋଥି ପାଇଛନ୍ତି ସେଗୁଡ଼ିକୁ ବିଭିନ୍ନ ପ୍ରକାଶକଙ୍କ ସହଯୋଗରେ ଲୋକଲୋଚନକୁ ଆଣିଛନ୍ତି । ଭଞ୍ଜଙ୍କ ରଚିତ 'ଶୋଭାବତୀ,ଚନ୍ଦ୍ରରେଖା, ଗୀତାଭିଧାନ୍, ପ୍ରକାଶ ପାଇଥିବା ବେଳେ 'ଘୁମୁସର ଇତିହାସ', ଘୁମୁସର ରାଜ ସନ୍ଦର୍ଭ ପୋଥି ଏବଂ ରାଜକବି ଘନଭଞ୍ଜ, ବିପ୍ଲବୀ ରାଜା କୃଷ୍ଣଭଞ୍ଜ ଓ ରାଜକବି ତ୍ରିବିକ୍ରମ ଭଞ୍ଜଙ୍କ ଜନ୍ମ ଜାତକ ଅପ୍ରକାଶିତ ରହିଯାଇଛି ଫଳରେ ଘୁମୁସରର ଅନେକ ତଥ୍ୟ ଲୁକ୍କାୟିତ ହୋଇ ରହିଅଛି ।

ପୋଥିରୁ ପାଠୋଦ୍ଧାର ପ୍ରାଚୀନ ସାହିତ୍ୟ ଗବେଷକର ପ୍ରଧାନ କାର୍ଯ୍ୟ । ବିଜ୍ଞାନୀ ଦୃଷ୍ଟି ହିଁ ଏହି କାର୍ଯ୍ୟକୁ ଯଥାସମ୍ଭବ ନିର୍ଭୁଲ କରିଥାଏ । ଭାବପ୍ରବଣ ଅବା କଳ୍ପନା ବିଳାସି ମନୋବୃତ୍ତି ଦ୍ୱାରା ପାଠୋଦ୍ଧାର କରାଗଲେ ପ୍ରକୃତ ତଥ୍ୟ ବିଖଣ୍ଡିତ ହୋଇ ପ୍ରକ୍ଷିପ୍ତ ଅଂଶ ପାଠକମାନଙ୍କୁ ବିଭ୍ରମ କରାଇଥାଏ । ଏ ଦିଗରେ ପଣ୍ଡିତ ଶ୍ରୀଧର ତଥ୍ୟ ଓ ପ୍ରମାଣ ଭିତ୍ତିରେ ସଂଗୃହୀତ ପୋଥିରୁ ପାଠୋଦ୍ଧାର କରିଛନ୍ତି । ''ବରପଲ୍ଲୀ ପଞ୍ଚାୟତର ସରପଞ୍ଚ ଦେବରାଜ ପାତ୍ରଙ୍କ ନିକଟରୁ ଖଣ୍ଡିଏ 'ଗୀତାଭିଧାନ' ପୋଥି ପାଇଲି । ପୋଥି ସହ ବହି ମିଳେଇ ଦେଖିଲି ଯେ ବହୁ ସ୍ଥାନରେ ପ୍ରଭେଦ ଅଛି । ଏବଂ ପ୍ରତି ଅକ୍ଷର ଶେଷରେ ଭଣିତା ଅଛି । ଏବଂ ଆଉ ଗୋଟିଏ ପୋଥି ମଧ ମିଳିଲା (?)ଦୁଇଟି ସମାନ ଥିବା ହେତୁ ପ୍ରକାଶ କରି ଲୋକ ଲୋଚନକୁ ଆଣିବା ଇଚ୍ଛା କରି ପୀୟୁଷ ଧାରା ଟୀକା କଲି ।'' ଏହା ହିଁ ଗବେଷକର ସତ୍ୟସନ୍ଧାନୀ ଦୃଷ୍ଟିକୋଣ ।

ପାଣ୍ଡୁଲିପି ଅନ୍ୱେଷଣ ଓ ପାଠୋଦ୍ଧାର ହେବା ପରେ ଗବେଷକର ଦାୟିତ୍ୱବହୁତ ବଢିଯାଏ । ସେ ସଂଗ୍ରହ କରିଥିବା ତଥ୍ୟକୁ କିପରି ସଂକଳିତ ଓ ସଜ୍ଜିତ କରିବ ତା'ର କୌଶଳ ସ୍ଥିର କରେ । ତଥ୍ୟ ସମୟାନୁସାରୀଏବଂ ବିଶ୍ଳେଷଣାତ୍ମକ ନ ହେଲେ ପରିକଳ୍ପିତ ସନ୍ଦର୍ଭ ଉପନ୍ୟାସ ହୋଇଯାଏ । ଏଣୁ ଗବେଷକ ସଂଯତ ନିରପେକ୍ଷ ବିଚାର ବୁଦ୍ଧି ନେଇ ଅତିସନ୍ତର୍ପଣରେ ନିବନ୍ଧ ରଚନା କରେ । ଏହି ଦୃଶ୍ୟପଟରେ ଭଞ୍ଜଶ୍ରୀ ଶ୍ରୀଧରଙ୍କ ରାଜକବି ଧନଞ୍ଜୟ ଭଞ୍ଜ ଏବଂ ସଂକ୍ଷିପ୍ତ ଘୁମୁସର ଇତିହାସ (୧୯୬୬),ଅମର ସନ୍ତାନ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ (୧୯୬୯), ଭଞ୍ଜ ସନ୍ଦର୍ଭ (୧୯୭୫), ଭଞ୍ଜ ସାହିତ୍ୟରେ ପ୍ରକୃତି ଚିତ୍ର (୧୯୮୧) ପ୍ରଭୃତିକୁ ଆଲୋଚନା କରାଯାଇପାରେ । ଭଞ୍ଜ ସାହିତ୍ୟରେ ପ୍ରକୃତି ଚିତ୍ର'କୁ ଛାଡି ଅନ୍ୟ ସବୁ ଆଲୋଚ୍ୟ ଗ୍ରନ୍ଥଗୁଡିକ ଜୀବନୀ ଭିତ୍ତିକ ଆଲୋଚନା ଅଟେ ।

'ରାଜକବି ଧନଞ୍ଜୟ ଭଞ୍ଜ ଏବଂ ସଂକ୍ଷିପ୍ତ ଘୁମୁସର ଇତିହାସ' ବଂଶ ପରିଚୟ, ରାଜବଂଶ ତାଲିକା, ଜନ୍ମସମୟ, ବିଦ୍ୟାଶିକ୍ଷା, ବୈବାହିକ ଜୀବନ, ବୈଷ୍ଣବ ଧର୍ମ ଗ୍ରହଣ, ଶକ୍ତି ଉପାସକ, ଅଳଙ୍କାର, ବର୍ଣ୍ଣନା (ସନ୍ଧ୍ୟା, ପ୍ରଭାତ, ବର୍ଷା, ଗ୍ରୀଷ୍ମ, ବସନ୍ତ, ଶରତ, ହେମନ୍ତ, ଶିଶିର, ସାମାଜିକ ରୀତି, ସମୁଦ୍ର) ଆଦି ଶୀର୍ଷକରେ ବିଷୟ ବିନ୍ୟାସ କରାଯାଇଛି । ପ୍ରସଙ୍ଗାନୁସାରେ ଓଡିଆ ସାହିତ୍ୟର ଇତିହାସରେ ତାରିଣୀ ଚରଣ ରଥଙ୍କ ଦ୍ୱାରା ୧୯୧୫ରେ ମଦନ ମଞ୍ଜରୀ- ମୁଖବନ୍ଧ, ଅଧ୍ୟାପକ ଗୌରୀ କୁମାର ବ୍ରହ୍ମାଙ୍କ ଦ୍ୱାରା ୧୯୬୦ ଅନଙ୍ଗରେଖା- ମୁଖବନ୍ଧରେ ଧନଞ୍ଜୟ ଭଞ୍ଜଙ୍କ ସଂକ୍ଷିପ୍ତ ପରିଚୟ ଦିଆଯାଇଛି । ଏ ଗୁଡିକଠାରୁ ପଣ୍ଡିତ ଶତପଥୀଙ୍କ ପୁସ୍ତକରେ ରାଜକବି ଧନଞ୍ଜୟ ଭଞ୍ଜଙ୍କ ଜୀବନୀକୁ ବିସ୍ତୃତଭାବେ ଆଲୋଚନା କରାଯାଇଛି । ଏଥି ନିମନ୍ତେ ଗବେଷକ ଶ୍ରୀଧର ଶତପଥୀ ଜନଶ୍ରୁତି, ସଂଗୀତ ମୁକ୍ତାବଳୀ, ଉପେନ୍ଦ୍ରଭଞ୍ଜଙ୍କ ଲାବଣ୍ୟବତୀ, ଘୁମୁସର କାବ୍ୟ, ଭଞ୍ଜ ବଂଶାନୁଚରିତ, ଘୁମୁସର ଇତିହାସ (ଅପ୍ରକାଶିତ) ଅନଙ୍ଗରେଖା ଆଦି ସ୍ରୋତର ପ୍ରତ୍ୟକ୍ଷ ଓ ପରୋକ୍ଷ ତଥ୍ୟ ଉପରେ ନିର୍ଭର କରିଛନ୍ତି । ପୁସ୍ତକଟି ୪୯ ପୃଷ୍ଠା ବିଶିଷ୍ଟ ହେଲେ ମଧ ଧନଞ୍ଜୟ ଭଞ୍ଜ, ଉପେନ୍ଦ୍ର ଭଞ୍ଜ, ସାହିତ୍ୟ ଓ ଘୁମୁସରର ସାରସ୍ୱତ ପରମ୍ପରା ଅଧ୍ୟୟନ ସକାଶେ ଗବେଷକମାନଙ୍କ ନିମନ୍ତେ ଉପାଦେୟ ଏହା ନିଃସନ୍ଦେହ ଅଟେ । ଏ ସଂପର୍କରେ ଗବେଷକ ଶତପଥୀ ସ୍ୱଅଭିପ୍ରାୟକୁ ସ୍ପଷ୍ଟ କରିଛନ୍ତି -ଧନଞ୍ଜୟ ଭଞ୍ଜଙ୍କୁ ଲୋକଲୋଚନକୁ ଆଣିବା ପାଇଁ ସେ ଏହି ପୁସ୍ତକକୁ ପ୍ରକାଶ କରିଛନ୍ତି ।

ଗବେଷକ ଶତପଥୀଙ୍କ ଅନ୍ୟତମ ଜୀବନୀ ପୁସ୍ତକ ହେଲା ଅମର ସନ୍ତାନ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ । ଏହା ତାଙ୍କର ଗବେଷକ ସ୍ୱାକ୍ଷର ବହନ କରିଛି । ଏକ ଶହ ପଞ୍ଚଷଠୀ ପୃଷ୍ଠା ସମ୍ବଳିତ ଏହି ଜୀବନୀଗ୍ରନ୍ଥ ଉପେନ୍ଦ୍ର ଭଞ୍ଜଙ୍କ ଜୀବନର ଅଜ୍ଞାତ ଅଧ୍ୟାୟ ତଥା ଦେଶ ଭ୍ରମଣ ବୃତ୍ତାନ୍ତକୁ ପ୍ରକାଶ କରିବା ସହ ଭଞ୍ଜ ସାହିତ୍ୟର ରସ, ଅଳଙ୍କାର ଓ ସଂଗୀତର ତ୍ରିବେଣୀ ଧାରକୁ ଉନ୍ମୋଚନ କରିଅଛି । ଗ୍ରନ୍ଥ ପ୍ରବେଶ କଲାବେଳେ ପାଠକଟିଏ ଘୁମୁସରର ପ୍ରଖ୍ୟାତ ଦେବୀ ବ୍ୟାଘ୍ରଦେବୀ (ବାକ୍‌ଦେବୀ)ଙ୍କ ସ୍ତୁତିକୁ ଲକ୍ଷ୍ୟ କରିଥାଏ । ଏହି ମଙ୍ଗଳାଚରଣ ପଣ୍ଡିତ ଶତପଥୀଙ୍କ ମୌଳିକ ପ୍ରତିଭାର ଅନ୍ୟତମ ବଳିଷ୍ଠ ନିଦର୍ଶନ ।

ଉପେନ୍ଦ୍ର ଭଞ୍ଜଙ୍କ ଜୀବନୀ ପର୍ଯ୍ୟାୟରେ ଶତପଥୀ ମହୋଦୟ ରଘୁନାଥ ବିଳାସ ଓ ବୈଦେହୀଶ ବିଳାସକୁ ଉପେନ୍ଦ୍ର ୧୪ଟି ଭାଷାରେ ଅର୍ଥ କରି ବୁଝାଇଥିଲେ । ଏଥିଯୋଗୁଁ ରାଜାଗଣ ଉପେନ୍ଦ୍ରଙ୍କୁ ''ବାରବେନି ବାଣୀ ବାର

ବିଳାସିନୀ ଭୁଜଙ୍ଗ'' ଉପାଧି ଦେଇଥିଲେ । ଏହି ଉପାଧି ସମ୍ପର୍କରେ ଉପେନ୍ଦ୍ର ଭଞ୍ଜଙ୍କ ଅନ୍ୟ ଜୀବନୀକାର ତଥା ଦାମୋଦର ଦାସ ଉପେନ୍ଦ୍ର ଭଞ୍ଜ ଜୀବନୀ - ପୃ ୭୫ରେ ଅନୁରୂପ ମତ ବ୍ୟକ୍ତ କରିଛନ୍ତି ।

ସଂଗୃହୀତ ଉପେନ୍ଦ୍ର ଭଞ୍ଜଙ୍କ ଜାତକ ଫଳରେ ସମ୍ୟକ ଆଲୋଚନା ଏହି ଗ୍ରନ୍ଥର ଅନ୍ୟତମ ବିଶେଷତ୍ୱ । ଜାତକ ଫଳାନୁସାରେ ଉପେନ୍ଦ୍ରଙ୍କ ମହାକବି ଯୋଗ ଏବଂ ଦ୍ୱିକଳତ୍ର ଯୋଗ ରହିଛି । ଉପେନ୍ଦ୍ର ଶକାବ୍ଦ ୧୫୯୮ ମାଘ ଶୁକ୍ଳ ଚତୁର୍ଥୀ ଗତ ପଞ୍ଚମୀ ରାତ୍ର ଏକ ଘଡିଠାରେ ଜନ୍ମ ହେବା କଥା ଗଣନା ଅନୁସାରେ କୁହାଯାଇଛି । ଏଣୁ ଭଞ୍ଜନଗରସ୍ଥ ଭଞ୍ଜ ପରିଷଦ ଉପେନ୍ଦ୍ରଙ୍କ ଜୟନ୍ତୀ ବସନ୍ତ ପଞ୍ଚମୀରେ ପାଳନ କରିଥାଏ । ଦ୍ୱିତୀୟରେ ଉପେନ୍ଦ୍ର ବନ୍ଧୁ ରମାକାନ୍ତ ରାଜଗୁରୁ, ସୀତାକାନ୍ତ ଶତପଥୀ ଓ ଶ୍ୱେତବାହନ ଉପେନ୍ଦ୍ର ଭଞ୍ଜଙ୍କ ସହ ବଉଦ, କେନ୍ଦୁଝର, ମୟୂରଭଞ୍ଜ ପ୍ରଭୃତି ଭଞ୍ଜ ବଂଶ ଦ୍ୱାରା ଶାସିତ ରାଜ୍ୟମାନଙ୍କୁ ସାରସ୍ୱତ ଭ୍ରମଣକରି ଯାଇଥିବାର କଥା ଏଥିରେ ଉଲ୍ଲେଖ ହୋଇଛି ।

ଅମର ସନ୍ତାନ ବହିର ଉତ୍ତରାର୍ଦ୍ଧରେ ଭଞ୍ଜ ସାହିତ୍ୟ ଚର୍ଚ୍ଚା ହୋଇଛି । ଯେଉଁଥିରୁ ଭଞ୍ଜଶ୍ରୀ ଶ୍ରୀଧର ଶତପଥୀଙ୍କ ପାଣ୍ଡିତ୍ୟକୁ ଉପଲବ୍ଧ କରିହୁଏ । ନାୟକ, ନାୟିକା, ରସର ସ୍ଥାୟୀଭାବ, ଅଷ୍ଟ ସାତ୍ତ୍ୱିକ, କନ୍ଦର୍ପ ଦଶା, ରସ ଦୋଷ, କାବ୍ୟଗୁଣ, କାବ୍ୟ ଦୋଷ,ଅର୍ଥଦୋଷ, ଶବ୍ଦାଳଙ୍କାର, ଅର୍ଥାଳଙ୍କର, ରାଗ ଓ ନୃତ୍ୟକୁ ବ୍ୟାଖ୍ୟା କରି ଭଞ୍ଜ ସାହିତ୍ୟରେ ତାହା କିପରି ପ୍ରୟୋଗ ହୋଇଛି, ସେ ସୂଚାଇଛନ୍ତି । ପଣ୍ଡିତଙ୍କର ପୂର୍ବାର୍ଜ୍ଜିତ ଜ୍ଞାନ ଏହି ଗ୍ରନ୍ଥରେ ସମୀକୃତ ହୋଇ ବୌଦ୍ଧିକ ଆଲୋଚନା ଦ୍ୱାରା ବୁଦ୍ଧିବନ୍ତ ହୋଇଛି । ମାର୍ଜ୍ଜିତ ଶବ୍ଦ ଓ ପରିମିତ ବାକ୍ୟ ବିନ୍ୟାସ ଯେ କୌଣସି ଗବେଷକର ଧର୍ମ ହୋଇଥାଏ । ଅମର ସନ୍ତାନ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ବହିରେ ଆମ୍ଭେ ଏହି ସବୁ ଲକ୍ଷଣ ସହ ପରିଚୟ ହୋଇଥାଉ । ଏହି ବହି ଉପରେ ପ୍ରଦତ୍ତ ମତାମତକୁ ଅନୁଧ୍ୟାନ କଲେ ଶ୍ରୀଯୁକ୍ତ ଶତପଥୀଙ୍କ ନିଷ୍ଠାପର ସାଧନା ସଂପର୍କରେ ଅବଗତ ହୋଇ ପାରିବା । ''ସର୍ବୋପରି ଭଞ୍ଜଙ୍କ ଜୀବନୀ ଚରିତର କେତେକ ଅନାବିଷ୍କୃତ ପ୍ରଦେଶର ରହସ୍ୟାବୃତ ଦ୍ୱାର ଉଦ୍‌ଘାଟନ କରି ସେ ଯେଉଁ ନୂତନତା ଦର୍ଶାଇଛନ୍ତି ତାହା ଏକାନ୍ତ ଅଭିନନ୍ଦନୀୟ । ମୋର ବିଶ୍ୱାସ ଭଞ୍ଜ ସାହିତ୍ୟର ଗବେଷଣା ଦିଗରେ ପଣ୍ଡିତ ଶତପଥୀଙ୍କର ଏହି ସାରସ୍ୱତ ଉଦ୍ୟମ ବିଶେଷ ସହାୟକ ହେବ ।

ଜ୍ୟୋତିର୍ବିନୋଦ ପଣ୍ଡିତ ଶ୍ରୀଧର ଶତପଥୀ ଭଞ୍ଜ ସାହିତ୍ୟ ଗବେଷଣା ପ୍ରତି ଯେଉଁ ଉତ୍ସୁକତା ପ୍ରଦର୍ଶନ କରିଛନ୍ତି ତାହାର ଚରମ ବିକାଶ ଘଟିଛି ତାଙ୍କର ଗ୍ରନ୍ଥ

'ଭଞ୍ଜ ସନ୍ଦର୍ଭ'ରେ । ଘୁମୁସର ଇତିହାସ, ଭଞ୍ଜବଂଶର ରାଜା, ପରମ୍ପରା, ମନ୍ତ୍ରସିଦ୍ଧି, ଦେଶ ଭ୍ରମଣ, ଶେଷ ଜୀବନ କାଳ ସହିତ ଭଞ୍ଜ ସାହିତ୍ୟ ଓ ସଂସ୍କୃତ ସାହିତ୍ୟର ତୁଳନାତ୍ମକ ବିଚାର କରି ସେ ଏହି ସଂନ୍ଦର୍ଭ ପ୍ରସ୍ତୁତ କରିଛନ୍ତି । ଏହା ଯେ ତାଙ୍କର ଜୀବନ ବ୍ୟାପୀ ଭଞ୍ଜ ସାହିତ୍ୟ ଗବେଷଣା ମନୋବୃତ୍ତିର ସାର୍ଥକ ପରିପ୍ରକାଶ କହି ପରିଚୟ ଦେବା ଅନାବଶ୍ୟକ । କାରଣ ଯେ କୌଣସି ସୁଧୀ ପାଠକ ଏହା ସ୍ୱୀକାର କରିନେବେ ।

ଏଠାରେ ଉଲ୍ଲେଖ କରିବା ଉଚିତ ହେବ ଯେ ଘୁମୁସର ଓ ଉପେନ୍ଦ୍ର ଭଞ୍ଜଙ୍କ ସମ୍ପର୍କରେ ଐତିହାସିକମାନେ ପ୍ରମାଣ ଅଭାବ ଯୋଗୁଁ ଆଲୋଚନାରୁ ଦୂରେଇ ରହନ୍ତି । ସେପରି ଡିଗ୍ରୀ ଲାଳାସୀ ସାହିତ୍ୟ ଗବେଷକ ବିବାଦୀୟ ବିଷୟକୁ ଆଲୋଚନା ପରିସରକୁ ନ ଆଣି ସନ୍ତର୍ପଣରେ ସେଥିରୁ ଓହରି ଯାଆନ୍ତି । କିନ୍ତୁ ପଣ୍ଡିତ ଶ୍ରୀଧର ଏହି ଉଭୟ ଶ୍ରେଣୀ ଭୁକ୍ତ ଗବେଷକ ମଧ୍ୟରେ ନାହାନ୍ତି । ତେଣୁ ଘୁମୁସରର ଗଳିକନ୍ଦିର ଶତାୟୁ ଲୋକ ମୁଖରୁ ଏବଂ ସଂଗୃହୀତ ପାଞ୍ଚଖଣ୍ଡ ଭଞ୍ଜବଂଶାବଳୀକୁ ତର୍ଜମା କରି ସେ ଯେଉଁ ନିଷ୍କର୍ଷରେ ପହଞ୍ଚିଛନ୍ତି ତାହାକୁ ଆତ୍ମବିଶ୍ୱାସ ସହ ସାହାସରେ ଉପସ୍ଥାପନ କରିଛନ୍ତି । ବ୍ୟତିବ୍ୟସ୍ତ ଓ ଚିନ୍ତିତ ମନ ପଣ୍ଡିତ ଶତପଥୀଙ୍କ ଗବେଷଣାକୁ ପ୍ରଭାବିତ କରିନାହିଁ । ସେ ଜାଣିଥିଲେ ସ୍ଥିର ଚିର ସ୍ଥିତପ୍ରଜ୍ଞ ବୌଦ୍ଧିକତା ଯେ କୌଣସି ଗବେଷଣା ପାଇଁ ଆବଶ୍ୟକ । ଏଣୁ ଅନ୍ତର୍ନିହିତ ପ୍ରତିଭା ଦ୍ୱାରା ଗୁଣାତ୍ମକ ସମାଲୋଚନା ପ୍ରତି ସେ ଆକୃଷ୍ଟ ହୋଇଛନ୍ତି । ଫଳରେ "ଭଞ୍ଜ ସନ୍ଦର୍ଭ" ତାଙ୍କର ଗଭୀର ଅଧ୍ୟବସାୟର ପ୍ରତୀକ । ଆହୃତ ଜ୍ଞାନକୁ ସେ ଦକ୍ଷତାର ସହ ଉପଯୁକ୍ତ ଭାବେ ଏହି ପୁସ୍ତକରେ ବିନିଯୋଗ କରିଛନ୍ତି ।

ଭଞ୍ଜ ସନ୍ଦର୍ଭ ଅନେକ ନୂତନ ତଥ୍ୟରେ ପୁଷ୍ଟ । ଉପେନ୍ଦ୍ରଭଞ୍ଜଙ୍କ ଜୀବନୀର ପ୍ରାୟତଃ ପୂର୍ଣ୍ଣାଙ୍ଗ ଚିତ୍ର ଏଥିରୁ ମିଳେ । ବାଲ୍ୟଜୀବନ, କିଶୋର ଜୀବନ, ସାଧକ ଜୀବନ, ବୈବାହିକ ଜୀବନ, ବିରହ ଜୀବନ ଓ କବି ଜୀବନ ଶୀର୍ଷକରେ ଗବେଷକ ଶ୍ରୀଧର ଶତପଥୀ ଉପେନ୍ଦ୍ରଙ୍କୁ ପରିଚୟ କରାଇଛନ୍ତି । ଏ ସମ୍ପର୍କରେ କେତେକ କିମ୍ବଦନ୍ତୀ ଶବସାଧକର ମୂର୍ଚ୍ଛା ଓ ଭୈରବୀଙ୍କଠାରୁ ବରପ୍ରାପ୍ତ, କୁଳାଡ ଠାରେ ବ୍ରାହ୍ମଣ ବଳି ପୁନଶ୍ଚ ବର ଦ୍ୱାରା ଜୀବନ୍ୟାସ, ସିଦ୍ଧଗୁମ୍ଫାରେ ସାଧନା, ବ୍ୟାଘ୍ର ଆକ୍ରମଣ ଶୁଣି ଉପେନ୍ଦ୍ରଙ୍କ ପ୍ରଥମ ସ୍ତ୍ରୀ ନବଦୁର୍ଗ ଜେମା ବିଦ୍ୟାବତୀଙ୍କ ମୃତ୍ୟୁ, ଉପେନ୍ଦ୍ରଙ୍କ ମନ୍ତ୍ରସିଦ୍ଧି ଆଦି ଉଲ୍ଲେଖ କରି ସତ୍ୟାନୁସନ୍ଧାନୀ ଗବେଷକ ମାନଙ୍କ ପାଇଁ ସେ ମାର୍ଗ ଉନ୍ମୋଚନ କରିଛନ୍ତି ।

ବାଣୀଭୂଷଣ ରମାକାନ୍ତ ରାଜଗୁରୁ, ଭାରତୀ ଭୂଷଣ ସୀତାକାନ୍ତ ଶତପଥୀ ଓ ସାହିତ୍ୟ ବିନୋଦ ଶ୍ୱେତବାହନ ଭଞ୍ଜ ଉପେନ୍ଦ୍ରଙ୍କ ଅନ୍ତରଙ୍ଗ ସାହିତ୍ୟିକ ବନ୍ଧୁ ଥିଲେ। ସେମାନେ ଭଞ୍ଜ କୃତିକୁ ବିଶଦ ଆଲୋଚନା କରି ବହୁ ରାଜସଭାରେ ସଂସ୍କୃତ ସାହିତ୍ୟ ସହିତ ତୁଳନା କରି ସେ ସବୁର ଉତ୍କୃଷ୍ଟ ପ୍ରତିପାଦନ କରିବାରେ ସହାୟ ହୋଇଛନ୍ତି । ଏହି ତଥ୍ୟ ଗବେଷକ ଶତପଥୀ ଘୁମୁସର ଇତିହାସ ଓ ଭଞ୍ଜ ସନ୍ଦର୍ଭ (ଅପ୍ରକାଶିତ ତାଳପତ୍ର ପୋଥି) ଅବଲମ୍ବନରେ ପ୍ରଦାନ କରିଥିବା ଉଲ୍ଲେଖ କରିଯାଇଛନ୍ତି । ଭଞ୍ଜ ଭୂମିକାରେ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ମଧ୍ୟ ଉପେନ୍ଦ୍ରଙ୍କ ସୃଜନଶୀଳ ପ୍ରତିଭା ସକାଶେ ତାଙ୍କର ଦ୍ୱିତୀୟ ପତ୍ନୀ 'ଭାରତୀ' ବାଣପୁର ରାଜା ଅଚ୍ୟୁତ ହରିଚନ୍ଦନଙ୍କ କନ୍ୟା (ଦାମୋଦର ଦାସଙ୍କ ମତରେ ଏକମାତ୍ର ପତ୍ନୀ ଲାବଣ୍ୟନିଧି)ଙ୍କର ପ୍ରେରଣା ରହିଥିଲା । ବୈଦେହୀଶ ବିଳାସ ସେହି ପ୍ରେରଣାରୁ ସଂଭୂତ ହୋଇଛି ବୋଲି ପଣ୍ଡିତଙ୍କର ଅନ୍ୟ ଏକ ମତ ଭଞ୍ଜ ସଂନ୍ଦର୍ଭରେ ଉଲ୍ଲେଖ ରହିଛି । ସେପରି ରାମଚନ୍ଦ୍ର ରାଜଗୁରୁ ଉପେନ୍ଦ୍ରଙ୍କ ଶିକ୍ଷାଗୁରୁ ଥିଲେ । ଭଞ୍ଜ ସାହିତ୍ୟର ବୈଶିଷ୍ଟ୍ୟ ପ୍ରତିପାଦନ ବେଳେ ଅର୍ଥାତ୍ ସଂସ୍କୃତ ସାହିତ୍ୟ ସମକକ୍ଷ ରୂପେ ପ୍ରତିଷ୍ଠା କରିବାକୁ ଯାଇ ପଣ୍ଡିତ ଶତପଥୀ ପ୍ରଶ୍ନୋତ୍ତର ଶୈଳୀ ଅନୁସରଣ କରି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ପ୍ରେମ ସୁଧାନିଧି, ଲବଣ୍ୟବତୀ, ସୁଭଦ୍ରା ପରିଣୟ,ଅବନା ରସତରଙ୍ଗ, ବୈଦେହୀଶ ବିଳାସ, ରସପଞ୍ଚକ, ଛାନ୍ଦ ଭୂଷଣ, ନୀଳାଦ୍ରୀଶ ଚଉତିଶାରୁ ଦୃଷ୍ଟାନ୍ତ ନେଇ ଶିଶୁପାଳବଧ, କିରାତାର୍ଜୁନୀୟ, ମେଘଦୂତ, ନୈଷଧ, କୁମାର ସମ୍ଭବ,ଋତୁସଂହାର ପ୍ରଭୃତି ସଂସ୍କୃତ ସୃଷ୍ଟି ସହ ତୁଳନା କରିଛନ୍ତି । କେବଳ ସେତିକି ନୁହେଁ ସାହିତ୍ୟ ଦର୍ପଣ, ଅଗ୍ନି ପୁରାଣ, ଭାଗବତ, ନାଟ୍ୟ ମନୋରମା,ଆୟୁର୍ବେଦ ପ୍ରଭୃତି ଗ୍ରନ୍ଥକୁ ଆଧାର କରି ଶ୍ରୀଧର ଶତପଥୀ ଭଞ୍ଜ ସନ୍ଦର୍ଭକୁ ଉଚ୍ଚକୋଟୀର ରଚନା ରୂପେ ସିଦ୍ଧ କରିବା ପାଇଁ ପ୍ରୟାସ ରତ । ''ଏହା ମୋର ସର୍ବଶ୍ରେଷ୍ଠ ବହି'' ଘୋଷଣା ଦ୍ୱାରା ଯେ ଏହାକୁ ଉତ୍କୃଷ୍ଟ ପୁସ୍ତକ ବୋଲି କୁହାଯାଉଅଛି ତାହା ନୁହେଁ । ଅନ୍ୟ ସମାଲୋଚକଙ୍କ ଦ୍ୱାରା ଭଞ୍ଜ ସଂନ୍ଦର୍ଭ ଏବଂ ପଣ୍ଡିତଙ୍କ ଅନୁକୂଳ ମତ ପ୍ରଦତ୍ତ । ବହୁ ଶ୍ରମ ସାଧନା ଘେନି ଅବିସ୍ମରଣୀୟ ପୂଜ୍ୟପାଦ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଅତୁଳନୀୟ ଅମର, ପ୍ରତିଭା ଯଥାସମ୍ଭବ ପରିଚୟ ପ୍ରଦାନ ପୂର୍ବକ ପଣ୍ଡିତ ଶ୍ରୀଧର ଶତପଥୀ ଏହି ଅପୂର୍ବ କୋଣାର୍କ ମନ୍ଦିରର ଜଣେ ନିଷ୍ଠାପର ସେବକ ବୋଲି ପରିଚୟ ଦେଇଛନ୍ତି, ତାଙ୍କ ରଚିତ ସନ୍ଦର୍ଭ ଗ୍ରନ୍ଥରେ ।''ପ୍ରକୃତରେ କହିବାକୁ ଗଲେ ଭଞ୍ଜ ସନ୍ଦର୍ଭକୁ ଗବେଷକ ଶତପଥୀଙ୍କ ବ୍ୟାପକ ଅଧ୍ୟୟନ, ଗଭୀର ଅଧ୍ୟବସାୟ, ନିର୍ଦ୍ଦିଷ୍ଟ

ଲକ୍ଷ୍ୟ, ସମୀକ୍ଷକର ସଂଯତ ଦୃଷ୍ଟିଭଙ୍ଗୀ ନିଷ୍କର୍ଷରେ ଉପନୀତ ହେବାପାଇଁ ତଥ୍ୟ ଅନ୍ୱେଷଣର ମନୋବୃତ୍ତିକୁ ପ୍ରଶଂସା ନକରି ରହିହେବ ନାହିଁ ।

ଭଞ୍ଜଶ୍ରୀ ପଣ୍ଡିତ ଶ୍ରୀଧରଙ୍କ ଅନ୍ୟତମ ଆଲୋଚନାତ୍ମକ ପୁସ୍ତକହେଲା ଭଞ୍ଜ ସାହିତ୍ୟରେ ପ୍ରକୃତି ଚିତ୍ର । ଏହା ଭଞ୍ଜ ସଂଦର୍ଭରେ ଅଂଶ ଭାବେ ରଚିତ ହୋଇଥିଲେ ମଧ ଏକ ସ୍ୱତନ୍ତ୍ର ପୁସ୍ତକ ଭାବେ ପ୍ରକାଶିତ ହେବା ଯୋଗୁଁ ସ୍ୱଗୌରବରେ ମହୀୟାନ ହୋଇଛି । ଏଥିରୁ ଶତପଥୀଙ୍କ ଗବେଷଣାର ଗୁଣାତ୍ମକ ଉପସ୍ଥାପନା ଏବଂ ସମାଲୋଚନାକୁ ବାରି ହୋଇଯାଏ । ବିଜ୍ଞାନ ସମ୍ମତ ଦୃଷ୍ଟିଭଙ୍ଗୀ, ଯୁକ୍ତିନିଷ୍ଠ ଆଲୋଚନା, ସଜ୍ଜିକରଣ କୌଶଳ, ବିଚାର ବୋଧତା, ଆହରଣରେ ମୌଳିକତା ଯୋଗୁଁ ଏହି ପୁସ୍ତକ ଭିନ୍ନ ସ୍ୱାଦ ବିଶିଷ୍ଟ କହିଲେ ଅତିରଞ୍ଜନ ହେବ ନାହିଁ । ମହାକାବ୍ୟ ଓ କାବ୍ୟ ଗୁଡିକରେ ବର୍ଣ୍ଣନା (ବ୍ୟକ୍ତିବର୍ଣ୍ଣନା ଓ ପ୍ରକୃତି ବର୍ଣ୍ଣନା) ଅନ୍ୟତମ ସାହିତ୍ୟିକ ଲକ୍ଷଣ । ପ୍ରାଚ୍ୟ ପରମ୍ପରାରେ ଅନୁପ୍ରାଣିତ ଉପେନ୍ଦ୍ରଙ୍କ ପ୍ରତ୍ୟେକ କାବ୍ୟ ବର୍ଣ୍ଣନା ପ୍ରଧାନ ଅଟେ । ଏଣୁ ପଣ୍ଡିତ ଶତପଥୀ ଏକାଧିକ ଭଞ୍ଜ କାବ୍ୟର ଆଧାରରେ ପ୍ରକୃତି ବର୍ଣ୍ଣନା ପ୍ରତି ସଚେତନ ହୋଇଛନ୍ତି ଛଅଋତୁ, ପ୍ରଭାତ, ସନ୍ଧ୍ୟା, ବନ, ସରୋବର, ନଦୀ, ସମୁଦ୍ର, ପର୍ବତ, ନଗର, ସୂର୍ଯ୍ୟ ପ୍ରଭୃତି ପ୍ରାକୃତିକ ଉପାଦାନର ବର୍ଣ୍ଣନା ସହିତ ଚରିତ୍ରମାନଙ୍କ ଯୁବାବସ୍ଥା, ନାରୀଅଙ୍ଗ ବର୍ଣ୍ଣନା ଦ୍ୱାରା ଭଞ୍ଜ କାବ୍ୟ କିପରି ପରିପୁଷ୍ଟ ତାହା ପ୍ରଦର୍ଶନ କରିବା ପାଇଁ ଗବେଷକ ଶତପଥୀଙ୍କ ଉଦ୍ୟମ ପ୍ରଶଂସନୀୟ । ଏହା ଦ୍ୱାରା ଭଞ୍ଜ ସାହିତ୍ୟର ସୌନ୍ଦର୍ଯ୍ୟ ଧାରାକୁ ପାଠକ ସହଜରେ ଆସ୍ୱାଦନ କରିପାରେ । ଲାବଣ୍ୟବତୀ, କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ, ବୈଦେହୀଶ ବିଳାସ, ରସଲେଖା ଆଦିରେ ବର୍ଣ୍ଣିତ ବସନ୍ତଋତୁକୁ ଅନୁଶୀଳନକରାଯାଇ ତାହାର ମହତ୍ତ୍ୱ ଉଦ୍‌ଘୋଷଣ ପ୍ରତି ଗବେଷକ ଯତ୍ନବାନ ହୋଇଛନ୍ତି ।

ଭଞ୍ଜଶ୍ରୀ ଶ୍ରୀଧର ଶତପଥୀଙ୍କ ଗବେଷଣାଧର୍ମୀ ପ୍ରବନ୍ଧ ଗୁଡିକ ଏକତ୍ର ସଂକଳିତ ହୋଇ ନଥିଲେ ମଧ ଭଞ୍ଜଯୁବ ସାହିତ୍ୟର ମୁଖପତ୍ର ବହିତ୍ର - ୧,୩,୪,୭,୯ ଓ ୧୦ ସଂଖ୍ୟାରେ ଯଥାକ୍ରମେ ଭଞ୍ଜ ସାହିତ୍ୟରୁ ଦର୍ଶନର ଆସ୍ୱାଦନ, ଲାବଣ୍ୟବତୀ,ବୈଦେହୀଶ ବିଳାସ ଏକ ଅଧ୍ୟୟନ, ସୁଭଦ୍ରା ପରିଣୟ, ରସଲେଖା ପରିଚୟ, ଛାନ୍ଦଭୂଷଣ ପ୍ରଭୃତି ଭଞ୍ଜ ସାହିତ୍ୟ ସଂପର୍କିତ ରଚନା ପ୍ରକାଶିତ ।

ଭଞ୍ଜରାଜ୍ୟ, ଭଞ୍ଜରାଜବଂଶ ଓ ଭଞ୍ଜ ସାହିତ୍ୟ ଗବେଷଣା ହିଁ ଶ୍ରୀଯୁକ୍ତ ଶତପଥୀଙ୍କ ନିରବଚ୍ଛିନ୍ନ ସାଧନା ଥିଲା; ତାହା ଏହି ଆଲୋଚନାରୁ ସ୍ପଷ୍ଟ । ଏଥି ସକାଶେ ୨୦.୫.୬୮ର ସମାଜ ଓ ପ୍ରଜାତନ୍ତ୍ର ଉଭୟେ ଯଥାକ୍ରମେ କହିଛନ୍ତି

''ଭଞ୍ଜନଗରର ସୁନାମଧନ୍ୟ ଭଞ୍ଜ ସାହିତ୍ୟ ଗବେଷକ ପଣ୍ଡିତ ଶ୍ରୀଧର ଶତପଥୀ'', ''ପ୍ରାଚୀନ ସାହିତ୍ୟ ଗବେଷକ ଅନୁରାଗୀ, ଜ୍ୟୋତିର୍ବିନୋଦ ତଥା ପଣ୍ଡିତ ଶ୍ରୀଧର ଶତପଥୀ '' । କେବଳ ସେତିକି ନୁହେଁ ୨୦.୫.୧୯୭୯ରେ ଯଦୁମଣି ସାହିତ୍ୟ ସଂସଦ ସ୍ୱୀକୃତି ଦେଇ କହିଛି ''ଭଞ୍ଜ ସାହିତ୍ୟର ଗବେଷଣା କ୍ଷେତ୍ରରେ ଆପଣଙ୍କ ଅଶେଷ କୃତିତ୍ୱ ରହିଛି । ପର୍ଯ୍ୟାପ୍ତ ସୂକ୍ଷ୍ମ ଅଧ୍ୟୟନ ହିଁ ଆପଣଙ୍କ ସୃଷ୍ଟିକୁ ମହିମା ମଣ୍ଡିତ କରିଛି '' । ଉତ୍କଳ ପରିଷଦ ବ୍ରହ୍ମପୁର ଭଞ୍ଜଶ୍ରୀ ଉପାଧି ଦେଇ ତା ୨୬.୫.୧୯୯୩ରେ ଘୋଷଣାକରିଛି- ''ଆପଣ ଅତ୍ୟନ୍ତ ନିଷ୍ଠାର ସହିତ ଜୀବନ ବ୍ୟାପୀ ଭଞ୍ଜ ସାହିତ୍ୟର ଗବେଷଣା ତଥା ପ୍ରଚାରଓ ପ୍ରସାର କରିଛନ୍ତି।'' ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତା ୨.୧.୧୯୯୪ରେ ମାନପତ୍ରରେ ଉଲ୍ଲେଖ କରିଛି- '' ଭଞ୍ଜ ସାହିତ୍ୟର ଜଣେ ବରିଷ୍ଠ ଗବେଷକ ଓ ଆଲୋଚକ ଭାବେ ଆପଣ ଓଡିଶାର ସାହିତ୍ୟ କ୍ଷେତ୍ରରେ ସୁପ୍ରତିଷ୍ଠିତ ।'' ସେପରି ଓଡିଶା ସାହିତ୍ୟ ଏକାଡେମୀ ତା ୨୯.୩.୯୬ରେ ସମ୍ମାନିତ କରି ମାନପତ୍ରରେ ଉଲ୍ଲେଖ କରିଛନ୍ତି- ''ଭଞ୍ଜ ସାହିତ୍ୟର ଅଧ୍ୟୟନ, ଅନୁଶୀଳନ, ଅନ୍ୱେଷଣ ଓ ଗବେଷଣା କ୍ଷେତ୍ରରେ ଆପଣଙ୍କର ଉଲ୍ଲେଖନୀୟ ଅବଦାନ ପାଇଁ ଆପଣଙ୍କ ଯଥାର୍ଥରେ ''ଭଞ୍ଜ ସାହିତ୍ୟ ବିଶାରଦ'' ଉପାଧିରେ ବିଭୂଷିତ ଏବଂ ବହୁ ସାରସ୍ୱତ ଓ ସାଂସ୍କୃତିକ ଅନୁଷ୍ଠାନ ପକ୍ଷରୁ ସମ୍ମାନିତ । ଭଞ୍ଜ ସାହିତ୍ୟର ନୂତନ ତତ୍ତ୍ୱ ଉନ୍ମୋଚନ ଦିଗରେ ଆପଣଙ୍କର ଐକାନ୍ତିକ ଅନୁସନ୍ଧିତ୍ସା ଏବଂ ଉକ୍ତ ସାହିତ୍ୟର ପ୍ରଚାର ଓ ପ୍ରସାର କକ୍ଷେ ଆପଣଙ୍କ ସାଧୁ ଉଦ୍ୟମ ଅତ୍ୟନ୍ତ ପ୍ରଶଂସନୀୟ ଓ ଅବିସ୍ମରଣୀୟ '' । ବାସ୍ତବରେ ଭଞ୍ଜଶ୍ରୀ ପଣ୍ଡୀତ ଶ୍ରୀଧର ଶତପଥୀ ଜଣେ ପ୍ରବୀଣ ଗବେଷକ । ତାଙ୍କର ଗବେଷଣା ଲବ୍ଧ ତଥ୍ୟ ଭବିଷ୍ୟତ ସତ୍ୟ ସନ୍ଧାନୀ ଗବେଷକ ପାଇଁ ନିର୍ଭରଯୋଗ୍ୟ ଭିତ୍ତିରୂପେ ଉପଯୋଗ ହୋଇପାରିବ ଏହା ନିଃସନ୍ଦେହ ।

## ପାଦଟୀକା

୧.ଶତପଥୀ, ପଣ୍ଡିତ ଶ୍ରୀଧର- ବ୍ୟାଘ୍ରଦେବୀ ସ୍ତୁତି, ଅମର ସନ୍ତାନ କବିସମ୍ରାଟ ଉପେନ୍ଦ୍ରଭଞ୍ଜ, ବ୍ରହ୍ମପୁର- ୧୯୬୯.

୨. ଶତପଥୀ, ପଣ୍ଡିତ ଶ୍ରୀଧର- ଚନ୍ଦ୍ରପ୍ରଭା- ୧୯୮୭.

୩ .ପଟ୍ଟନାୟକ, ଡକ୍ଟର କବିଚନ୍ଦ୍ର କାଳୀଚରଣ - 'ପ୍ରତିଭା ବିକାଶ'- ଭଞ୍ଜ ସନ୍ଦର୍ଭ- ସିଦ୍ଧାନ୍ତ ପ୍ରେସ, ବ୍ରହ୍ମପୁର- ୧୯୭୫.

୪.ଶତପଥୀ,ଭଞ୍ଜଶ୍ରୀ ଶ୍ରୀଧର- କିଛି ସ୍ମୃତି କିଛି ଅନୁଭୂତି, ଭୁବନେଶ୍ୱର,୧୯୯୫, ପୃ-୨୭
୫. ଶତପଥୀ, ପଣ୍ଡିତ ଶ୍ରୀଧର- ଭୂମିକା, କବିସମ୍ରାଟ ଉପେନ୍ଦ୍ର ଭଞ୍ଜ କୃତ ଗୀତାଭିଧାନ -ତାରା ପ୍ରେସ, ବ୍ରହ୍ମପୁର- ୧୯୭୭ ପୃ- ୨
୬. ବ୍ରହ୍ମା, ଗୌରୀକୁମାର, ଅଭିମତ - ଅମର ସନ୍ତାନ, ବ୍ରହ୍ମପୁର- ୧୯୬୯
୭. ଶତପଥୀ, ଭଞ୍ଜଶ୍ରୀ ପଣ୍ଡିତ ଶ୍ରୀଧର - ''କିଛି ସ୍ମୃତି କିଛି ଅନୁଭୂତି'' ।
୮.ପଟ୍ଟନାୟକ, ଡଃ କବିଚନ୍ଦ୍ର କାଳୀଚରଣ, ପ୍ରତିଭା ବିକାଶ, ଭଞ୍ଜସନ୍ଦର୍ଭ-ସିଦ୍ଧାନ୍ତ ପ୍ରେସ, ବ୍ରହ୍ମପୁର,୧୯୭୫- ପୃ ୧୦ ।

ମୁଖ୍ୟ ଅଧ୍ୟାପକ
ଓଡିଆ ଭାଷା ଓ ସାହିତ୍ୟ ବିଭାଗ
ଚିକିଟି ମହାବିଦ୍ୟାଳୟ ।

*****

# ବହୁ 'ଶ୍ରୀ'ର ଅଧିକାରୀ

ଡକ୍ଟର ନିଶାକର ପାଢୀ

ଉଣେଇଶି ଶହ ସତୁରୀ ସାଲରେ ଭଞ୍ଜନଗର କଲେଜରେ ଚାକିରୀ ଏବଂ ତାପରେ ଭଞ୍ଜ ସାହିତ୍ୟ ପରିଷଦର ଭଞ୍ଜ ଜୟନ୍ତୀ ଉତ୍ସବ ସହ ସଂପୃକ୍ତି ମଧ୍ୟରେ କବି ସମ୍ରାଟଙ୍କ ପ୍ରତି ଯେଉଁ ଅତ୍ୟନ୍ତ ନିଷ୍ଠାପର ବ୍ୟକ୍ତିଙ୍କୁ ମୁଁ ସର୍ବପ୍ରଥମେ ଭଞ୍ଜଭୂମିରେ ଆବିଷ୍କାର କରିଥିଲି, ସେ ଥିଲେ ଭଞ୍ଜଶ୍ରୀ ପଣ୍ଡିତଶ୍ରୀଯୁକ୍ତ ଶ୍ରୀଧର ଶତପଥୀ । ଆଜି ମୋ'ର ମନେହେଉଛି, ତାଙ୍କର ଉପରୋକ୍ତ ଉପାଧିଯୁକ୍ତ ନାଆଁରେ ଥିବା ତିନିଗୋଟି 'ଶ୍ରୀ'ଠାରୁ ସେ ପ୍ରକୃତରେ ଥିଲେ ଆହୁରି ଅଧିକ 'ଶ୍ରୀ'ର ଅଧିକାରୀ ।

'ଶ୍ରୀ'ର ଅର୍ଥ କେବଳ ଲକ୍ଷ୍ମୀ ବା ସରସ୍ୱତୀଙ୍କୁ ବୁଝାଏ ନାହିଁ ଏଇ ଯୁକ୍ତାକ୍ଷର ଗୋଟିକ ସୌନ୍ଦର୍ଯ୍ୟ ଚେହେରା, ଭଙ୍ଗୀ, ବେଶ ବିନ୍ୟାସଠାରୁ ସୌଭାଗ୍ୟ ପର୍ଯ୍ୟନ୍ତ ଅର୍ଥ ପ୍ରକାଶ କରିଥାଏ । ଶ୍ରୀଧରବାବୁ ଲକ୍ଷ୍ମୀଙ୍କୁ ଧାରଣ କରିଥିଲେ କି ନାହିଁ, ସେ କଥା ତାଙ୍କର ପତ୍ନୀ ଓ ପରିବାର କହିବେ, ମାତ୍ର 'ଶ୍ରୀ'ର ଅନ୍ୟାର୍ଥ ସରସ୍ୱତୀଙ୍କର ସେ ଯେ ନିଶ୍ଚିତ ବରପୁତ୍ର ଥିଲେ, ଏ କଥା ରାଜ୍ୟସାରା ଜାଣନ୍ତି । ଭଞ୍ଜ ସାହିତ୍ୟର ପ୍ରଚାର ଓ ପ୍ରସାର ଦିଗରେ ତାଙ୍କର ଅମର ବଳିଷ୍ଠ ଭୂମିକା ତଥା ପୁସ୍ତକାଦି ପ୍ରକାଶନ - ଏ ସବୁର ଜ୍ୱଳନ୍ତ ପ୍ରମାଣ

ସୌନ୍ଦର୍ଯ୍ୟ, ଚେହେରା, ଭଙ୍ଗୀ ବା ବେଶ ବିନ୍ୟାସ ଅର୍ଥରେ ଶ୍ରୀଧରବାବୁ ହିଁ ଭଞ୍ଜନଗର ଉପଖଣ୍ଡରେ ଥିଲେ କେବଳ ଶ୍ରୀଧରବାବୁ -ଅର୍ଥାତ୍ ଅତୁଳନୀୟ । ପ୍ରକୃତ ପ୍ରତିକୃତି ନଥିବା ଉପେନ୍ଦ୍ର ଭଞ୍ଜଙ୍କର ସମ୍ଭାବ୍ୟ ପ୍ରତିରୂପ ଥିଲେ ସତେ ଯେପରି ପଣ୍ଡିତ ମହାଶୟ । ତାଙ୍କର ସୁଗୌର ରାଜକୀୟ ଠାଣିରେ ସେ ଥିଲେ ଭଞ୍ଜୀୟ ପ୍ରତୀକ । ଗୋରା ଚେହେରାକୁ ଆବୃତ କରି ଧଳାରଙ୍ଗର ପରିଷ୍କାର ଧୋତି ପଞ୍ଜାବୀ ତାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ସାତ୍ତ୍ୱିକ ଭାବମୂର୍ତ୍ତିକୁ ଅଧିକତର ସୁନ୍ଦର ମନୋହର କରି ପକାଉଥିଲା ।

ପରମ ସୌଭାଗ୍ୟର ଅଧିକାରୀ ଶ୍ରୀଧରବାବୁ ଥିଲେ କେବଳ ଚାରିଗୋଟି ଯୋଗ୍ୟ ପୁତ୍ରଙ୍କର ଭାଗ୍ୟବାନ ଜନକ : ରାଜା ଦଶରଥଙ୍କ ପରି ଜ୍ୟେଷ୍ଠ ପୁତ୍ର ମନ୍ମଥକୁମାର - ଜଣେ ପ୍ରତିଷ୍ଠିତ ନାଟ୍ୟକାର ତଥା ଚଳଚିତ୍ର ନିର୍ଦ୍ଦେଶକ ଏବଂ ରାଜ୍ୟ ବିକ୍ରିକର ବିଭାଗର ବରିଷ୍ଠ ଅଫିସର, ଦ୍ୱିତୀୟ ପୁତ୍ର ସନ୍ତୋଷ କୁମାର ଦକ୍ଷିଣ ଓଡିଶାର କଳା ସଂସ୍କୃତି ଉପରେ ଜଣେ ବିଶିଷ୍ଟ ଗବେଷକ, ତଥା ଡକ୍ଟୋରେଟ୍ ଉପାଧି ପ୍ରାପ୍ତ, ତୃତୀୟ ପୁତ୍ର ସୁରେନ୍ଦ୍ର କୁମାର ଏକାଧାରାରେ ଲେଖକ, ବିଶେଷ କରି ପ୍ରାବନ୍ଧିକ, ଦକ୍ଷିଣ ଓଡିଶାର ସଂସ୍କୃତି ସଂପର୍କୀୟ ପତ୍ରିକା ଘୁମୁସର ସଂସ୍କୃତିର ସଂପାଦକ ଓ ପୁସ୍ତକ ବ୍ୟବସାୟ ସହ ସଂପୃକ୍ତ ଏବଂ କନିଷ୍ଠ ପୁତ୍ର ଉପେନ୍ଦ୍ର କୁମାର ନିଜସ୍ୱ ଶୈଳୀରେ ପ୍ରଖ୍ୟାତ ମଞ୍ଚ ତଥା ଚଳଚିତ୍ର ଅଭିନେତା ଓ ନାଟ୍ୟ ନିର୍ଦ୍ଦେଶକ ।

ଏହିସବୁ ଦୃଷ୍ଟିରୁ ଶ୍ରୀଧର ବାବୁଙ୍କୁ ମୁଁ ବହୁ 'ଶ୍ରୀ'ର ଅଧିକାରୀ ଭାବରେ ସମ୍ବୋଧନ କରେ । ଆଜି ମୋର ମନେ ପଡିଯାଉଛି, ତାଙ୍କ ସହ ମଧୁର ସାନ୍ନିଧ୍ୟର ଅବିସ୍ମରଣୀୟ ମୁହୂର୍ତ୍ତସବୁ । ହଠାତ୍ କେବେ ଯଦି ଦିନବେଳା ଦେଖାହୋଇଗଲା, ମୋ' ପାଇଁ ପଦେ କବିତା ଉଚ୍ଚୁରି ଆସିବ ପରିହାସ ଛନ୍ଦରେ, ଅଥଚ ଭଞ୍ଜ : ଭଞ୍ଜ ଶୈଳୀରେ -

''ବଡ ବିଚିତ୍ର ଚିତ୍ର ଏ ଦେଖିଲିରେ ସୂର୍ଯ୍ୟ ଅଛି ଆକାଶରେ
ଚନ୍ଦ୍ର(ନିଶାକର : ମୋ ନାଁ) ନିରେଖିଲିରେ '' ।

ଏକଦା ଡକ୍ଟର ମାୟାଧର ମାନସିଂ ମଧ୍ୟ କବିତାରେ ମୋତେ ଲେଖିଥିଲେ ସେହି ଏକା କଥା -

''ଦିବା ଭାଗେ ଯେଣୁ
ନିଶାକର ବଜାଇଲେ
କବିତାରେ ବେଣୁ ....''
\+ + + ଇତ୍ୟାଦି

ଶ୍ରୀଧର ବାବୁଙ୍କ ଭିତରେ ମୁଁ ସେଇପ୍ରକାର କବି ପ୍ରତିଭାକୁ ଅନୁଭବ କରୁଥିଲି- ଅଥଚ ଯେ କି ଜଣେ ନିରୋଳ ପ୍ରାବନ୍ଧିକ । ଭଞ୍ଜ କାବ୍ୟ ପଢ଼ି ପଢ଼ି ହୁଏତ ତାଙ୍କ ଭିତରେ ସୃଷ୍ଟିଶୀଳ କବି ପ୍ରତିଭାର ସ୍ରୋତଟି ଏମିତି କେବଳ ଗୁପ୍ତ ଗଙ୍ଗା ପାଲଟି ଯାଇଥିଲା ।

ସେ ଆଜି ନାହାନ୍ତି । ସେ ଥିଲେ, ମୋ ଜୀବନରେ 'ବହିତ୍ର'ର ଅନ୍ୟତମ ପ୍ରେରଣା । ଭଞ୍ଜ ସାହିତ୍ୟ ପରିଷଦର ଭଞ୍ଜ ଜୟନ୍ତୀ ହୁଏତ ଏହି ଶ୍ରୀମାନଙ୍କୁ ହରାଇ ଏବେ ଭାରି ହତଶ୍ରୀ ମନେ ହେଉଥିବ । ସମସ୍ତେ ଅନୁଭବ କରୁଥିବେ ତାଙ୍କର ଅଭାବ । ସମଗ୍ର ରାଜ୍ୟରେ ଅତ୍ର ତତ୍ର ସର୍ବତ୍ର ଯେତେବେଳେ ଯେଉଁଠାରେ ଭଞ୍ଜ ସାହିତ୍ୟର ଚର୍ଚ୍ଚା ହେବ, ସେଠାରେ ସେତେବେଳେ ବକ୍ତା, ଲେଖକ ବା ଗବେଷକମାନେ ନିଶ୍ଚୟ ଉଲ୍ଲେଖ କରିବେ, ''ଭଞ୍ଜଶ୍ରୀ ପଣ୍ଡିତ ଶ୍ରୀଧର ଶତପଥୀଙ୍କ ଭାଷାରେ + + + + + + + + + ''ଭଞ୍ଜୀୟ ମାନସରେ ଏମିତି ସେ ଅମର ରହିବେ ଚିରକାଳ ।

ବାଙ୍କୀ କଲେଜ : କଟକ

*****

# ଭଞ୍ଜ ସମୀକ୍ଷକ ଶ୍ରୀଯୁକ୍ତ ଶ୍ରୀଧର ବାବୁ

ଶ୍ରୀଯୁକ୍ତ ରଜତ କୁମାର କର

ଭଞ୍ଜ ଭକ୍ତ ଶ୍ରୀଧର ବାବୁ ବୋଲି କହିବାକୁ ଭାବୁଥିଲି । ପରେ ମନେ ହେଲା, ସେ ଖାଲି ଜଣେ ନିଷ୍କ୍ରିୟ ବା ଉଦ୍ଧମତା ଭରା ଭକ୍ତ ନୁହଁନ୍ତି । ସେ ଜଣେ ସକ୍ରିୟ ସମୀକ୍ଷକ । ଭଞ୍ଜ ସାହିତ୍ୟର ସଫଳ ସମୀକ୍ଷାରେ ତାଙ୍କର ଅବଦାନ ସ୍ମରଣୀୟ ହୋଇପାରିବ ।

ବହୁବାର ସେ କଟକ ଭଞ୍ଜ ଜୟନ୍ତୀକୁ କଳିଙ୍ଗଭାରତୀର ଅତିଥି ହୋଇ ଆସିଛନ୍ତି । ଥରେ ସେ ସଂସ୍କୃତ ସାହିତ୍ୟରେ ଅଳଙ୍କାର ନିୟମ, କବି ପ୍ରସିଦ୍ଧିର ଉଦାହରଣ ଦେଇ ଭଞ୍ଜ ସାହିତ୍ୟରେ ତାହାକିପରି ଅନୁସୃତ ହୋଇଛି ଓ ମହାକବି ହେବା ପାଇଁ ଥିବା ନୀତିନିୟମ କିପରି ଭଞ୍ଜୀୟ ରଚନାରେ ସୁପ୍ରତିଫଳିତ ହୋଇଅଛି ତାହା ଦର୍ଶାଇଥିଲେ । ମୁଁ ଦର୍ଶକମଣ୍ଡଳୀ ମଧ୍ୟକୁ ନୀରବରେ ଆସି ତାଙ୍କ ମନୋଭାବ ବୁଝିବାକୁ ଚେଷ୍ଟା କରିଥାଏ । ଶୁଣିଲି, ଜଣେ ଶ୍ରୋତା କହୁଛନ୍ତି, ଏଭଳି ଲୋକ ଆସିବା ଦରକାର; ତଥାକଥିତ ବୈଜ୍ଞାନିକ ପଦ୍ଧତିର ଦ୍ୱାହି ଦେଇ ଫାଙ୍କା ମାରୁଥିବା ସମାଲୋଚକ ଆମର ଦରକାର ନାହିଁ । ସଂସ୍କୃତ ସାହିତ୍ୟରେ ସେ ମଜ୍ଜିଥିଲେ । ତାର ସମାଲୋଚନାର ମାପକାଠିରେ ଭଞ୍ଜଙ୍କୁ ସମୁଚ୍ଚ ଗିରି ବୋଲି ଭାବି ତାଙ୍କ ବଳିଷ୍ଠ ଉପାସକ ହୋଇଥିଲେ ।

ଭଞ୍ଜଙ୍କର ଜନ୍ମଦିବସ ବିଷୟରେ ସମସ୍ତେ ଏକମତ ହୋଇପାରିନାହାଁନ୍ତି । ଭଞ୍ଜ ସାହିତ୍ୟ ପରିଷଦ ଶ୍ରୀପଞ୍ଚମୀକୁ ତାଙ୍କ ଜନ୍ମ ଦିବସ ବୋଲି ଘୋଷଣା କରିଛନ୍ତି । ବିଭିନ୍ନ ଅଞ୍ଚଳ ଗସ୍ତ କରି ଭଞ୍ଜ ସମ୍ବନ୍ଧୀୟ ପୋଥି ସଂଗ୍ରହ ତାଙ୍କର ଗୋଟିଏ ନିଶାଥିଲା ଓ ଏହାକୁ ନିଜ ଉପବନର ଧର୍ମ ବୋଲି ମଣି ଅତନ୍ଦ୍ରିତ ଭାବେ ସେ ଏଥିରେ ଲାଗି ପଡିଥିଲେ ।

ଏହି ଉଦ୍ୟମ ଫଳରେ ଭଞ୍ଜଙ୍କ କେତୋଟି ରଚନା ଓ ଘୁମୁସରର ଇତିହାସ ସଂଗୃହୀତ ହୋଇପାରିଛି । ଉପେନ୍ଦ୍ରଭଞ୍ଜଙ୍କର ଜାତକଟି ସେ ପ୍ରାପ୍ତ

ହୋଇଛନ୍ତି ବୋଲି ପ୍ରକାଶ କରିଛନ୍ତି ଓ ଗ୍ରହମାନଙ୍କର ସ୍ଥିତି ଅନୁସାରେ ଭଞ୍ଜଙ୍କ ଜୀବନର ଘଟଣା ସମୁଦାୟକୁ ମିଳାଇବାକୁ ଚେଷ୍ଟା କରିଛନ୍ତି । ବହୁ ସମାଲୋଚକ ଜାତୀୟ ପଞ୍ଜିକା ଓ ଗ୍ରହମାନଙ୍କର ସେ ମସିହାର ସ୍ଥିତିର ଦ୍ୱାହି ଦେଇ ତାହା ସହିତ ଏକମତ ହୋଇନଥିଲେ ମଧ୍ୟ ସେ ତାଙ୍କ ମତରେ ଅଟଳ ଥିଲେ ।

ନିଜେ ଜଣେ ଉଚ୍ଚକୋଟୀର ଜ୍ୟୋତିଷଥିବାରୁ ଭଞ୍ଜଙ୍କ ଜାତକ ଗଣନା କରିବା ସହ ଉପେନ୍ଦ୍ରଭଞ୍ଜ ଦେଇଥିବା ଜନ୍ମ ଲଗ୍ନ ମାନଙ୍କର ସମୀକ୍ଷା କରି ସେ ନାୟକ ନାୟିକାଙ୍କ ଚରିତ୍ର ବର୍ଣ୍ଣନା ମିଳାଉଥିଲେ ।

ଉପେନ୍ଦ୍ରଭଞ୍ଜଙ୍କ ଜୀବନୀ ତଥା ତାଙ୍କ କାବ୍ୟ କୃତିର ବିଶ୍ଳେଷଣାତ୍ମକ, ସମୀକ୍ଷା କରି ପ୍ରଥମେ ''ଅମର ସନ୍ତାନ'' ଓ ପରେ ''ଭଞ୍ଜ ସନ୍ଦର୍ଭ'' ରଚନା କରି ନିଜେ ତାହା ପ୍ରକାଶ କରିଥିଲେ ପ୍ରତିବର୍ଷ କିଛି ଭଞ୍ଜ ସାହିତ୍ୟ ସମ୍ବନ୍ଧୀୟ ପ୍ରକାଶ କରିବା ତାଙ୍କର ଗୋଟାଏ ବଡ ସଉକ ଥିଲା ।

''ଭଞ୍ଜ ସନ୍ଦର୍ଭ'' ଶୀର୍ଷକ ପୁସ୍ତକରେ ସେ ପ୍ରକାଶ କରିଛନ୍ତି, ''୧୯୬୩ ଖ୍ରୀଷ୍ଟାବ୍ଦରେ ଘୁମୁସର ଭ୍ରମଣ ବେଳେ ଚନ୍ଦ୍ରକଳା କାବ୍ୟ ମିଳିଥିଲା । ଚନ୍ଦ୍ରକଳା କାବ୍ୟର କେତେକ ତତ୍କାଳୀନ କଳିଙ୍ଗପତ୍ରିକାରେ ପ୍ରବାଶ କରି ଭଞ୍ଜ ସାହିତ୍ୟ ଗବେଷକମାନଙ୍କର ଆଲୋଚନା ଓ ମତ ପ୍ରକାଶ ସକାଶେ ଅନୁରୋଧ କରିଥିଲି ଓ ମତ ପ୍ରକାଶ ସକାଶେ ଅନୁରୋଧ କରିଥିଲି । ଜଣେ ଖ୍ୟାତନାମା ସାହିତ୍ୟିକ ବନ୍ଧୁ କହିଥିଲେ ଯେ ଏହା ଉପେନ୍ଦ୍ରଭଞ୍ଜଙ୍କ ଭଣିତି ଥିଲେ ମଧ୍ୟ ଉପେନ୍ଦ୍ରଭଞ୍ଜଙ୍କର ନୁହେଁ । କାରଣ ବହୁତ ଆଧୁନିକ ଶବ୍ଦ ଅଛି ''।

ସେ ସାହିତ୍ୟିକ ବନ୍ଧୁଟି ବୋଧହୁଏ ମୁଁ । ସେ ବହିଟି କଳିଙ୍ଗ ଭାରତୀ ତରଫରୁ ପ୍ରକାଶିତ ହେବା ପାଇଁ ମାଗିଥିଲି । ସେ ଆଗ୍ରହର ସହିତ ବଢାଇ ଦେଇଥିଲେ । କେତେକ ଜାଗାରେ ଦେଖିଲି ସେଥିରେ ବହୁତ ଆଧୁନିକ ଶବ୍ଦ ଅଛି । ପରେ ସେ ସ୍ୱୀକାର କରିଥିଲେ ଯେ ମୂଳ ପୋଥିର ବହୁ ଅଂଶ ଉଇ ଖାଇଥିବାରୁ କିଛି ଶବ୍ଦ ଯୋଡା ଯାଇଛି ।

ଅନ୍ୟ ଗୋଟିଏ ପୋଥିପାଇ ପାଠାନ୍ତର ନ ଦେଖିବା ପର୍ଯ୍ୟନ୍ତ କଳିଙ୍ଗ ଭାରତୀ ତରଫରୁ ପ୍ରକାଶ କରିବାକୁ କୁଣ୍ଠା ହେଲା । ମୁଁ ତାକୁ ଅଧ୍ୟାପକ ରଙ୍ଗାଧର ଷଡଙ୍ଗୀକୁ ଦେଖିବା ପାଇଁ ଦେଇଥିଲି ଦୁର୍ଭାଗ୍ୟକୁ ତାହା ସେଠାରେ ହଜିଗଲା । ରଙ୍ଗାଧର ଯିଏ,ଭୋଳାନାଥ ସିଏ । ସିଏ ଭୋଳାନାଥକୁ ମୁଁ

ମଧ୍ୟ ରଜତ ଚନ୍ଦ୍ରଶେଖରଙ୍କ ପରି ମହାଭୋଳା । ମୋ ତନ୍ଦ୍ରା ଭାଙ୍ଗିବା ବେଳକୁ ନକଲ କରା ହୋଇଥିବା ଖାତାର ପତ୍ତା ମିଳିଲା ନାହିଁ । ଦୁଇ ଭୋଳାଙ୍କ ଯୋଗୁଁ ଏ କଥା ଘଟିଲା ।

ତାଙ୍କର ଦାୟାଦମାନଙ୍କଠାରେ ସେ ଚନ୍ଦ୍ରକଳା ପୋଥିର ନକଲଟିଏ ବି ଯଦି ଥାଏ; ତେବେ ସେ ଆଧୁନିକ ଶବ୍ଦ ଯୋଖା ହୋଇଥିବା ଅନ୍ୟାନ୍ୟ ଭଞ୍ଜ ପଦାବଳୀ ଲୋକଲୋଚନକୁ ଆସିପାରନ୍ତା । ଏ ଦିଗରେ ଉଦ୍ୟମ ପାଇଁ ଅନୁରୋଧ । ତାଙ୍କ ଇଚ୍ଛା ସେଇୟା ଥିଲା । ମୁଁ ରାଜି ନହେବାରୁ ସେ ଦୁଃଖିତ ହେବା ଭଳି ମତେ ଜଣାପଡ଼ିଲା । ସେ ଲେଖିଛନ୍ତି, "ଉତ୍କଳ ଭାରତୀଙ୍କ କୃପା ହେଲେ ପ୍ରକାଶ ପାଇବ" । ତାଙ୍କର ଏ ଇଚ୍ଛା ରୂପାୟିତ ହେବା ପାଇଁ ମା ଭାରତୀଙ୍କୁ ପ୍ରାର୍ଥନା କରୁଛି । ଖାତାଟି ମିଳିଲେ ପ୍ରକାଶ କରାଇବା ।

ଭଞ୍ଜ ସନ୍ଦର୍ଭରେ ଭଞ୍ଜଙ୍କ ଚାରି ସଖାଙ୍କ ନାମ ସେ ଦେଇଛନ୍ତି । ଏହା ତାଙ୍କର ଆବିଷ୍କାର । ଘୁମୁସର ଅଞ୍ଚଳରୁ ଏକ ପୋଥିରୁ ତାହା ପାଇଛନ୍ତି ବୋଲି ସେ ଜଣାଇଛନ୍ତି । ଜଣେ ସଖା ଶ୍ରୀ ସୀତାକାନ୍ତ ଶତପଥୀ ତାଙ୍କ ପୂର୍ବଜ ବୋଲି ଜାଣି ସେ ଗର୍ବ ଗୌରବ ଅନୁଭବ କରିଛନ୍ତି ଓ ଏହା ଏକ ସ୍ୱାଭାବିକ ସ୍ୱାଭିମାନ । ଏ ଦିଗରେ କେତେକ ସମାଲୋଚକଙ୍କ କାମ ତାଙ୍କୁ ଆଦୃତ କଲେ ମଧ୍ୟ ଭ୍ରାନ୍ତ, ବିଚଳିତ ଓ ସ୍ଖଳିତ କରିନାହିଁ ।

ଉପେନ୍ଦ୍ର ଭଞ୍ଜଙ୍କ ସାଙ୍ଗମାନଙ୍କ ନାମ ସୀତାକାନ୍ତ ଶତପଥୀ, ରମାକାନ୍ତ ରାଜଗୁରୁ, ଶ୍ୱେତବାହନ ଭଞ୍ଜ ବୋଲି ସେ ସଦ୍ୟପ୍ରାପ୍ତ ଘୁମୁସର ଇତିହାସ ପୋଥିରୁ ଉଦ୍ଧାର କରିଛନ୍ତି ।

ଧନଞ୍ଜୟ ପାଶେ ରାଜଗୁରୁ ଦିନେ
ଜଣାଣ କଲେ ଯେ ଉତ୍‌ଫୁଲ୍ଲ ସୁମନେ
ଘୁମୁସର ରାଜ୍ୟ ମଧ୍ୟ ସଭାଟିଏ କରି
ସଂସ୍କୃତ ସାହିତ୍ୟ ଭାଷା ଚରଚା ବିସ୍ତାରି

ଶକାବ୍ଦ ୧୬୨୦ ଫାଲଗୁନ ଦଶମୀରେ ଆଠଗଡ, ଖଲ୍ଲିକୋଟ, ମହୁରୀ, ଚିକିଟି, ଧରାକୋଟ, ପାରଳା, ନବଦୁର୍ଗ, ଦଶପଲ୍ଲା, ବଉଦ ସବୁ ନିଜ ନିଜ ପଣ୍ଡିତଙ୍କୁ ଧରି ପହଞ୍ଚିଲେ, ଆଠଗଡର ରାମଚନ୍ଦ୍ର ରଥ, ପାରଳାର ହରିଶ୍ଚନ୍ଦ୍ର ମିଶ୍ର, ଧରାକୋଟର ନାରାୟଣ ମହାପାତ୍ର ଓ ଦୁଇଜଣ ଯୋଗୀ ରାମଦାସ ଓ ହରିଦାସଙ୍କ ସହ ଶାସ୍ତ୍ରାର୍ଥ କଲେ କବିଙ୍କ ସଙ୍ଗୀଗଣ ।

ଏହି ଶାସ୍ତ୍ରାର୍ଥରୁ ଫୁଟିଲା ଭଞ୍ଜଙ୍କ ପ୍ରତିଭା ସୁମନ । ସଙ୍ଗୀମାନଙ୍କ ଉକ୍ତି ପ୍ରତ୍ୟୁକ୍ତି କରିଆରେ ଭଞ୍ଜୀୟ ପ୍ରତିଭାର ବହୁ ଗୂଢ ତଥା ଅନାଲୋଚିତ ବିଷୟ ଲୋକଲୋଚନକୁ ଆଣିଛନ୍ତି ପଣ୍ଡିତ ଶତପଥୀ ।

ଶାସ୍ତ୍ରାର୍ଥବେଳେ ପଣ୍ଡିତେ କହିଲେ ସଂସ୍କୃତରେ ଏକ ପଦରେ ଅଛି ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ସ୍ତୁତି ।

ଭଞ୍ଜବନ୍ଧୁ ଶ୍ୱେତବାହନ ଭଞ୍ଜ ଉଦ୍ଧାର କଲେ ଭଞ୍ଜୀୟ ପଦ :-

''ଯେ ବିଭୂ ସୁରଭି ହର ଧୃତ ରାମପଦ
ଉଦିତ ଯେ ଜଗତେ ଜନକ ମୋହପ୍ରଦ
ହରିତାମ୍ବର ସର୍ବଦା ଅଙ୍କହୀନ ସେହି
ରାଘବ, ଶିବ ବିଧିରେ ଉପଇନ୍ଦ୍ର ଧ୍ୟାୟି ।।

ସାହିତ୍ୟ ବିଶାରଦ ପ୍ରଶ୍ନ କଲେ, ସଂସ୍କୃତରେ ଲେଖା ଅଛି---

ଦାଦଦୋ ଦୁଦ୍ଧ ଦୁଦ୍ଧାଦୀ ଦାଦାଦୋ ଦଦଦୀ ଦଦୋଃ
ଦୁଦ୍ଧାଦଂ ଦଦଦେ ଦୁଦ୍ଧେ ଦଦାଦ ଦଦଦୋଽଦଦଃ ।।

ଏହାଶୁଣି ରମାକାନ୍ତ ରାଜଗୁରୁ ଉଦ୍ଧାର କଲେ ନିମ୍ନୋକ୍ତ ଭଞ୍ଜୀୟ ପଦ ପ୍ରେମସୁଧାନିଧିରେ :-

କକୁ କକୁ କୋକା କାକ କକ କକୁ କ୍ରକ
କେକୀ କକ କେକା କେକୋ କକି କିକ କକ ।।

ଅର୍ଥାତ୍ ବର୍ଷା ଋତୁରେ ଝଞ୍ଜା ପବନ, ବକ, ଭେକ, ଚକୁଆ, ଡାହୁକ, କୁକୁଟ, ମୟୁର, କଙ୍କ ପକ୍ଷୀ ଏମାନଙ୍କ ରାବ ହେଲା ।

ସହସ୍ର ଶୀର୍ଷା ବିରାଟ ପୁରୁଷକୁ ଲକ୍ଷ୍ୟ କରି ରାମ ରାବଣ ଯୁଦ୍ଧ ସମୟରେ ରାବଣର ଶର ରାମଙ୍କ ବକ୍ଷରେ ବାଜିବାରୁ ରାମ ବିଶ୍ୱରୂପ ଗ୍ରହଣ କରିଥିବା ପଦ ଉଦ୍ଧାର କରାଗଲା ନିମ୍ନମତେ ।

''ବିବେକ ବିଚାରେ ବିଷ୍ଣୁ ମୂର୍ତ୍ତି
ବିରାଟ ମୁକୁଟ ସେହି ବିରାଟ ଧୂପରେ ରହି
ବିରାଟ ରୂପରେ ସ୍ନେହୀ ହୋଇଲେ ତହିଁ ''

ଭଞ୍ଜୀୟ ବୈଶିଷ୍ୟ ପ୍ରତିପାଦନ ନିମନ୍ତେ ପଣ୍ଡିତ ଶ୍ରୀଧର ଶତପଥୀଙ୍କର ଏହା ଅଭିନବ ପନ୍ଥା । ଏହାଦ୍ୱାରା ସେ ମନୋଜ୍ଞ ଭାବେ ଭଞ୍ଜଙ୍କ ବୈଶିଷ୍ଟ୍ୟ ପ୍ରତିପାଦନ କରିଛନ୍ତି ।

ଭଞ୍ଜ ସାହିତ୍ୟରେ ନବରସ ବିଶ୍ଳେଷଣ କରି ସେ ସମାଲୋଚନା-କ୍ଷେତ୍ରର ଦିଗନ୍ତକୁ ପ୍ରସାରିତ କରିଛନ୍ତି । ଗୀତାଭିଧାନ ଗ୍ରନ୍ଥରେ ଭଞ୍ଜ ବହୁ ଶବ୍ଦର ବିଭିନ୍ନ ଅର୍ଥ ଦେଇଛନ୍ତି । ପଣ୍ଡିତମହାଶୟ ଟୀକାସହ ତାକୁ ପ୍ରକାଶ କରି ଭଞ୍ଜସାହିତ୍ୟ ପ୍ରେମୀଙ୍କ ଅଶେଷ ଉପକାର କରିଅଛନ୍ତି । ଏଥିପାଇଁ ସେ ଅଭିନନ୍ଦନୀୟ ।

ସୁସଙ୍ଗଠକ, ଅତ୍ୟନ୍ତ ସାହିତ୍ୟାନୁରାଗୀ, ବନ୍ଧୁବତ୍ସଳ, କର୍ତ୍ତବ୍ୟ ପରାୟଣ ତଥା କବି ପଣ୍ଡିତ ଶ୍ରୀଧର ଶତପଥୀ ମହାଶୟଙ୍କ ସ୍ମୃତି ଚାରଣରେ ମୋର ଗଭୀର ଆନନ୍ଦ ହେଉଛି । କଳିଙ୍ଗ ଭାରତୀ ତରଫରୁ ତାଙ୍କୁ ସମ୍ମାନିତ କରାଯାଇଥିଲା । ଅସୁସ୍ଥତାବଶତଃ ସେ ଉପସ୍ଥିତ ରହିପାରିଲେ ନାହିଁ ।

ନିର୍ଦ୍ଦେଶକ ଅକ୍ଷୟ ମହାନ୍ତିଙ୍କ ନାଟ୍ୟସଂସ୍ଥା ଯେତେବେଳେ ମୋ ନାଟକ "କବି ସମ୍ରାଟ"ର ରବିନ୍ଦ୍ର ମଣ୍ଡପରେ ପୁନରାଭିନୟ କଲା, ସେତେବେଳେ ମୋ ଅନୁରୋଧରେ ସେଠାରେ ତାଙ୍କୁ ସମ୍ବର୍ଦ୍ଧିତ କରାଯାଇଥିଲା ।

ମୋ ସହ ତାଙ୍କର ବ୍ୟକ୍ତିଗତ ସମ୍ପର୍କ ମଧୁର ଓ ଗଭୀର ଥିଲା । ମୁଁ ଗଞ୍ଜାମ ଫୁଲବାଣୀର ସ୍କୁଲ ସମୂହ ପରିଦର୍ଶକ ହେବାରେ ସେ ଆହ୍ଲାଦିତ ଥିଲେ ଓ ମୁଁ ନିର୍ଦ୍ଦେଶକ ହେବାରେ ଯଥେଷ୍ଟ ପୁଲକିତ ଥିଲେ । ମୁଁ ଏହା ଅନୁଭବ କରିଛି । ଆମ ଦୁହିଁଙ୍କ ସମ୍ପର୍କ ଭଙ୍ଗୀୟ ।

ଗତବର୍ଷ ପାଠକ ପରିଷଦ ଅଧିବେଶନରେ ତାଙ୍କ ଘରକୁ ଗଲି । ଆହ୍ଲାଦ ଆଦରର ପଟାନ୍ତର ନାହିଁ । ତାହାହିଁ ହୋଇଗଲା ଶେଷ ଦେଖା । ମୋ ମନରେ ଭଞ୍ଜ ଥିବା ପର୍ଯ୍ୟନ୍ତ ଭଞ୍ଜଙ୍କ ସମୀକ୍ଷକ ଶ୍ରୀଧର ମହାଶୟ "ଶ୍ରୀ" ମଣ୍ଡିତ ହୋଇ ମୋ ହୃଦୟରେ ଥିବେ ।

ସଭାପତି, କଳିଙ୍ଗ ଭାରତି

*****

# PANDIT SRIDHAR SATAPATHY- A COLOURFUL PERSONALITY OF GHUMSAR

**Dr. P.S.N.Patro**

Pandit Sridhar Satapathy- a multifaceted genius was born on 15th September, 1914, in Basudevpur Sasan near Bhanjanagar in the district of Ganjam . He was very much influenced by his established forefathers and especially by his father Janardan Satapathy and mother Rasmani. He was gifted with memory power so much so that he could even recite the lines of AMARKOSHA besides some mantras, Slokas and lessons of astrology and other Sastras at the age of seven. His family members were very much associated with Sanskrit Tol which was established in Basudevpur Sasan. At a very early age of fourteen he became the Editor of PRATIBHA- a handwritten News paper which was brought out under the aegis of youth Association of the village.

The Year 1927 witnessed an important event in Sridhar Satapathy's life. The established Congress Leaders like Mahatma Gandhi, Mahadev Desai, Rajkrishna Bose, Jadumani Mangaraj, Gopabandhu Das, Nilakantha Das, Godavaris Mishra. Sashi Bhusan Rath, Niranjan Patnaik and many others had attended a congress meeting organised near Basudevpur Sasan. The main patron of this meeting happened to be Banchanidhi Patnaik by whose inspiration Sridhar was drawn to the fold of Congress Party. In 1931, when Pandit Kasinath Mishra joined as a teacher in Sanskrit tol in his village, Sridhar could avail good opportunities in acquiring proficiency in poetry, Drama and the like. During his studies at Parlakhemundi, he came into contact with a host of prominent scholars like Gadadhar Bidya Bhusan, Govind Das and Artatrana Mishra. He made deep study of GRAHA CHAKRA, BHASPATI and SIDHANTA SIROMANI. He had to come back to his village because of acute financial crisis engulfing his family.

One would recollect with pride the beautiful handwriting of horoscopes by Sridhar on palm leaves. In this art he was second to none in the area.

During his stay at Berhampur he came into contact with a great social reformer Jayamangal Rath and an established spice Merchant Doki Adinarayana Subudhi. He was endeared by one and all on account of his unique readings of horoscope matching, reciting of slokas and Mantras in an impeccable style.

The cultural and literary traditions of Ghumsar could attain further fillip when Sridhar got settled at Bhanjanagar the seat and centre of Ghumsar. By the collective efforts of some stalwarts, the BHANJA SAHITYA PARISHAD was born. Over the years the Parishad has emerged as a pioneering cultural institution of Orissa in general and of South Orissa in particular. Every year Bhanja Jayanti is observed where eminent persons are invited to deliver lectures on various aspects of Bhanja Literature. Although with the efforts of manby well wishers Bhanja Jayanti is observed, yet every one would agree that such Jayantis were inconceivable without Sridhar Satapathy. It is by his inspiration many including myself could avail rare opportunity of making some dent into the literary creations of Upendra Bhanja the unchallenged poet emperor of Oriya literature.

Sridhar was conferred the title of JYOTIR VINODO on 11 th June, 1946, by Raja Bahadur and Raja Saheb of Tekkali for good and noble behaviour and intellectual capacity especially in astrology, BHANJA SRI title by the Utkal Parishad on 26th MAY, 1993, honoured by Berhampur University on the eve of its foundation Day on 2nd Jan 1994, for being an outstanding Researcher and writer on Bhanja Literature and for his creative works on Literature, astrology and Karmakanda, honoured by Orissa Sahitya Academy for his studies , pursuit and research and exploration of various facets of Bhanja Literature and conferred the title of KARMA KANDA BIDYARATNA on the eve of silver Jubilee of Niyati on 27th December, 1995, for his depth of understanding and dissemination of vedic literature, astrology, palmistry and the like, honoured by Kalinga Bharathi with Artatrana Award and by Jadumani Sahitya Sansad for his incisive study of ancient literature. These awards and honours constitute only a few in the life time of Sridhar.

Ghumsar has the pride of being the adobe of many important temples . Sridhar had exhibited immense interest in the establishment of scores of temples in various capacities. Even the festivals of Ghumsar including the famous Goddess Festival of Bhanjanagar bear the imprints of his contributions - moral and spiritual.

Sridhar's ceaseless efforts in bringing into light the unique literary creations of the poet Emperor Upendra Bhanja have enriched our great cultural parameters. The Publications of SHOBHABATI KABYA, CHANDRA REKHA KABYA, RAJKABI DHANANJAY BHANJ, AMAR SANTAN KABI SAMARAT UPENDRA BHANJ, BHANJA SANDARBH, BHANJA SAHITYA RA PRAK RUTI CHITRA, APPARENTLY INDICATE SRIDHAR'S indepth understanding and novel interpretation of invaluable aspects of Bhanja literatures, GITA BIDHAN, CHANDRA PRABHA KABYA, GRAHASHANTI PADHATI, should also be considered as his memorable works. His autobiography KICHI SMRUTI KICHI ANUBHUTI is an objective analysis of his life and achievments.

By being inspired by Sribatcha Panda- a doyen of social reformations movement in Orissa-Sridhar had spread the massage of social reforms by moving from village to village. He breathed his last in March, 1998.

I was in the teaching staff of K.S.U.B.College , Bhanjangar, for nearly twenty seven years. I had the good fortune of knowing him intimately. Whatever I am today is immensely because of his inspiration, encouragement and good wishes. It is heartening that his sons are well established in different spheres of life and have been striving to be in consonance with the ideals of their illustrious father.

The proposal for the establishment of BHANJASRI PANDIT SRIDHAR SATAPATHY FOUNDATION, by Sri Manmath Satapathy, the eldest son of late Pandit Sridhar Satapathy, is a welcome step. This step can go a long way by ushering in the cultural rejuvenation of Ghumsar a cause so dear to Sridhar's heart.

Retired Principal,
Berhampur.

*****